॥ ଶ୍ରୀହରିଃ ॥ 1252▲

# ଭଗବାନଙ୍କ ରହିବାର ପାଞ୍ଚୋଟି ସ୍ଥାନ

भगवान्के रहनेके पाँच स्थान ( ओड़िआ )



गीताप्रेस गोरखपुर
GITA PRESS, GORAKHPUR

ଶ୍ରୀଜୟଦୟାଲ ଗୋୟନ୍ଦକା

1252

॥ ଶ୍ରୀହରିଃ ॥

# ଭଗବାନଙ୍କ ରହିବାର ପାଞ୍ଚୋଟି ସ୍ଥାନ

**भगवान्के रहनेके पाँच स्थान ( ओड़िआ )**

ତ୍ୱମେବ ମାତା ଚ ପିତା ତ୍ୱମେବ
ତ୍ୱମେବ ବନ୍ଧୁଶ୍ଚ ସଖା ତ୍ୱମେବ ।
ତ୍ୱମେବ ବିଦ୍ୟା ଦ୍ରବିଣଂ ତ୍ୱମେବ
ତ୍ୱମେବ ସର୍ବଂ ମମ ଦେବଦେବ ॥

ସମ୍ପାଦକ : ଜୟଦୟାଲ ଗୋୟନ୍ଦକା
ଭାଷାନ୍ତର : ସ୍ୱାମୀ ଶ୍ରଦ୍ଧାସ୍ୱରୂପାନନ୍ଦ

॥ ଶ୍ରୀହରିଃ ॥

# ନମ୍ର ନିବେଦନ

ଧର୍ମର ଫଳ ହେଉଛି ସଂସାର-ବନ୍ଧନରୁ ମୁକ୍ତି ଓ ଭଗବତ୍‌ପ୍ରାପ୍ତି । ବିଭିନ୍ନ ପୁରାଣ ଶ୍ରବଣ-ମନନ ଆଦି କଲେ ଧର୍ମାଚରଣ-ଜ୍ଞାନ ଭଲ ଭାବରେ ହୋଇପାରେ । ବେଦ ପରି ପୁରାଣମାନେ ମଧ୍ୟ ଧର୍ମ-ଅର୍ଥ-କାମ-ମୋକ୍ଷ—ଏହି ଚାରିପ୍ରକାର ପୁରୁଷାର୍ଥ ଉପଦେଶ ଦିଅନ୍ତି । ପୁରାଣମାନଙ୍କ ମଧ୍ୟରେ ପଦ୍ମପୁରାଣର ଏକ ବିଶିଷ୍ଟ ସ୍ଥାନ ରହିଛି । ଏହାକୁ ଶ୍ରୀଭଗବାନଙ୍କ ପୁରାଣରୂପ-ବିଗ୍ରହର ହୃଦୟ ବୋଲି ସ୍ୱୀକାର କରାଯାଇଛି—'*ହୃଦୟଂ ପଦ୍ମସଂଜ୍ଞକମ୍*' । ଏହାକୁ ବୈଷ୍ଣବମାନଙ୍କର ସର୍ବସ୍ୱ ବୋଲି କୁହାଯାଇଥାଏ ।

ପଦ୍ମପୁରାଣରେ ଭଗବଦ୍‌ଭକ୍ତି, ଜ୍ଞାନ, ବୈରାଗ୍ୟ, ତପଶ୍ଚର୍ଯ୍ୟା, ଦେବାରାଧନା, ତୀର୍ଥ, ବ୍ରତ, ଦାନ, ଧର୍ମ ଆଦି ବିଭିନ୍ନ ବିଷୟରେ ବିଶଦ ବିବେଚନା ସହିତ ଅନେକ ଶିକ୍ଷାପ୍ରଦ ଉପାଖ୍ୟାନ ଓ କଲ୍ୟାଣକାରୀ କଥା ରହିଛି । ସେହିସବୁ କଥା ଆଦର୍ଶ ଚରିତ୍ର, ସତ୍ୟ, ଧର୍ମ ଓ ନୀତି ବିଷୟକ ଗହନ ଶିକ୍ଷା ଦେବା ସହିତ ଆଧ୍ୟାତ୍ମିକ ଚେତନା ଜାଗ୍ରତ କରି ଆତ୍ମକଲ୍ୟାଣର ମାର୍ଗ ପ୍ରଶସ୍ତ କରେ ।

ପ୍ରସ୍ତୁତ ପୁସ୍ତକଟିରେ ପଦ୍ମପୁରାଣର ସୃଷ୍ଟିଖଣ୍ଡରୁ ସଂଗୃହୀତ ପାଞ୍ଚୋଟି କଥା ରହିଛି । ଏଥିରେ ଉଚ୍ଚକୋଟୀର ସରଳ ଓ ପ୍ରେରଣାପ୍ରଦ ଚରିତ୍ରମାନଙ୍କ ମାଧ୍ୟମରେ ସର୍ବବ୍ୟାପକ ଭଗବାନ୍ ଶ୍ରୀହରି ବିଶେଷରୂପେ କେଉଁ କେଉଁ ସ୍ଥାନରେ ନିବାସ କରନ୍ତି, ତାହା ସାରରୂପରେ କୁହାଯାଇଛି । ଗୀତାପ୍ରେସରୁ ପ୍ରକାଶିତ ପଦ୍ମପୁରାଣର ସଂକ୍ଷିପ୍ତ ହିନ୍ଦୀ ରୂପାନ୍ତର ପରମ ଶ୍ରଦ୍ଧେୟ ବ୍ରହ୍ମଲୀନ ଶ୍ରୀ ଜୟଦୟାଲ ଗୋୟନ୍ଦକାଙ୍କ ଦ୍ୱାରା ସରଳ, ବୋଧଗମ୍ୟ ଭାଷାରେ ବହୁ ଆଗରୁ କରାଯାଇଛି ; ତାହା ଗ୍ରନ୍ଥାକାରରେ ଆଜି ମଧ୍ୟ ଉପଲବ୍ଧ । ସେଥିରୁ ନିଆଯାଇଥିବା ମୂକ ଚଣ୍ଡାଳ, ତୁଳାଧାର ବୈଶ୍ୟ, ନରୋତ୍ତମ ବ୍ରାହ୍ମଣ ଆଦି ପ୍ରସିଦ୍ଧ କଥାମାନଙ୍କର ଏହି ସଂକଳନଟି ସମସ୍ତଙ୍କର ହିତ ପାଇଁ ପ୍ରକାଶ କରାଯାଉଛି ।

ଆମର ବିଶ୍ୱାସ, ଏହି ପୁସ୍ତକର ପଠନ-ପାଠନ ଓ ମନନପୂର୍ବକ ଏହି ମହାନ୍ ଚରିତ୍ରମାନଙ୍କର ବିଶେଷତାଗୁଡ଼ିକ ଅନୁସରଣ ଏବଂ ପାଳନ କଲେ ଜୀବନର ନିଶ୍ଚିତ ପରିବର୍ତ୍ତନ ହୋଇପାରିବ । ସରଳ ଓ ସୁବୋଧ୍ୟ ଭାଷାରେ ପ୍ରସ୍ତୁତ ଏହି ପୁସ୍ତକଟି ସବୁବର୍ଗର ପାଠକମାନଙ୍କ ପାଇଁ ଉପଯୋଗୀ । ଅତଏବ ସମସ୍ତେ ଏଥିରୁ ଅଧିକାଧିକ ଲାଭ ଉଠାଇବା ଉଚିତ ।

—ପ୍ରକାଶକ

# ଅମୂଲ୍ୟ ବଚନ

(୧) ''ଯେପରି କଲେ ଏକାନ୍ତ ସ୍ଥାନରେ ପ୍ରସନ୍ନ ଚିତ୍ତରେ ସ୍ଥିର ହୋଇ ରହିହେବ, ସେପରି ଚେଷ୍ଟା କରିବା ଉଚିତ । ପ୍ରଫୁଲ୍ଲିତ ଚିତ୍ତରେ ଏକାନ୍ତରେ ବସି ନିରନ୍ତର ଶ୍ୱାସଦ୍ୱାରା ନାମଜପ କଲେ ଏହା ସମ୍ଭବ ହୋଇପାରେ ।''

(୨) ''ଭଗବତ୍‌ପ୍ରେମ ଏବଂ ଭକ୍ତି-ଜ୍ଞାନ-ବୈରାଗ୍ୟ-ସମ୍ବନ୍ଧୀୟ ଶାସ୍ତ୍ର ପଢ଼ିବା ଉଚିତ ।''

(୩) ''ଏକାନ୍ତଦେଶରେ ଧ୍ୟାନ କରିବା ସମୟରେ ଯଦି କୌଣସି ବିଷୟ ସ୍ମରଣକୁ ଆସିଯାଏ, ତେବେ ତାହା ତୁରନ୍ତ ଭୁଲିଯିବା ଉଚିତ । ଏପରି ସଂକଳ୍ପ ତ୍ୟାଗଦ୍ୱାରା ବହୁ ଲାଭ ହୁଏ ।''

(୪) ''ଧନ ଲାଭ ଉଦ୍ଦେଶ୍ୟରେ କାର୍ଯ୍ୟ କଲେ ମନ ସଂସାରରେ ଲାଗିଯାଏ; ତେଣୁ ସାଂସାରିକ କାର୍ଯ୍ୟ ବଡ଼ ସାବଧାନରେ, କେବଳ ଭଗବତ୍‌ପ୍ରୀତି ପାଇଁ ହିଁ କରିବା ଉଚିତ । ଏପରି କାର୍ଯ୍ୟ ଅଧିକ ମାତ୍ରାରେ କରିବା ଉଚିତ ନୁହେଁ; କାରଣ କାର୍ଯ୍ୟର ଅଧିକତାଦ୍ୱାରା ଉଦ୍ଦେଶ୍ୟରେ ପରିବର୍ତ୍ତନ ଆସିଯାଏ ।''

(୫) ''ସାଂସାରିକ ପଦାର୍ଥ ତଥା ସାଂସାରିକ ମନୁଷ୍ୟମାନଙ୍କ ସହିତ ଯଥାସମ୍ଭବ କମ୍ ମିଳାମିଶା କରିବା ଉଚିତ ।''

(୬) ''ସାଂସାରିକ କଥାବାର୍ତ୍ତା ଯଥାସମ୍ଭବ କମ୍ କରିବା ଉଚିତ ।''

(୭) ''ନ ପଗ୍ଗୁରୁଣୁ କାହାରି ଅବଗୁଣ କହିବା ଉଚିତ ନୁହେଁ ଓ ସେଥି ପ୍ରତି ଧ୍ୟାନ ଦେବା ବି ଉଚିତ ନୁହେଁ ।''



॥ ଶ୍ରୀହରିଃ ॥

# ଭଗବାନଙ୍କ ରହିବାର ପାଞ୍ଚୋଟି ସ୍ଥାନ

## ପଞ୍ଚ ମହାଯଜ୍ଞ

**ବ୍ୟାସଦେବ କହିଲେ**—''ହେ ଶିଷ୍ୟଗଣ ! ମୁଁ ତୁମମାନଙ୍କୁ ଧର୍ମସମ୍ବନ୍ଧୀୟ ପାଞ୍ଚଟି ଆଖ୍ୟାନ ଶୁଣାଇବି । ସେଥିମଧ୍ୟରୁ ଗୋଟିକର ଅନୁଷ୍ଠାନ କରି ମଧ୍ୟ ମନୁଷ୍ୟ ସୁଯଶ, ସ୍ୱର୍ଗ ତଥା ମୋକ୍ଷ ଲାଭ କରିପାରେ । ମାତା-ପିତାଙ୍କ ପୂଜା, ସ୍ୱାମୀଙ୍କ ସେବା, ସମସ୍ତଙ୍କ ପ୍ରତି ସମାନଭାବ ରଖିବା, ମିତ୍ରମାନଙ୍କ ପ୍ରତି ଦ୍ରୋହ ନ କରିବା ଓ ଭଗବାନ୍ ଶ୍ରୀବିଷ୍ଣୁଙ୍କର ଭଜନ କରିବା—ଏଗୁଡ଼ିକ ହେଉଛି ପଞ୍ଚମହାଯଜ୍ଞ । ହେ ବ୍ରାହ୍ମଣଗଣ ! ପ୍ରଥମେ ମାତା-ପିତାଙ୍କୁ ପୂଜା କରି ମନୁଷ୍ୟ ଯେଉଁ ଧର୍ମ ସାଧନ କରେ, ତାହା ଅନେକ ଯଜ୍ଞ ତଥା ତୀର୍ଥଯାତ୍ରା ଆଦିଦ୍ୱାରା ମଧ୍ୟ ଦୁର୍ଲଭ । ପିତା ଧର୍ମ; ପିତା ସ୍ୱର୍ଗ ଓ ପିତା ହିଁ ପରମ ତପ । ପିତା ପ୍ରସନ୍ନ ହୋଇଗଲେ ସମସ୍ତ ଦେବତା ପ୍ରସନ୍ନ ହୋଇଯାଆନ୍ତି । ଯାହାର ସେବା ଓ ସଦ୍‌ଗୁଣରେ ପିତା-ମାତା ସନ୍ତୁଷ୍ଟ ରହନ୍ତି, ସେହି ପୁତ୍ରକୁ ପ୍ରତିଦିନ ଗଙ୍ଗାସ୍ନାନର ଫଳ ମିଳେ । ମାତା ହେଉଛନ୍ତି ସର୍ବତୀର୍ଥମୟୀ ଓ ପିତା ସମସ୍ତ ଦେବତାଙ୍କର ସ୍ୱରୂପ; ଏଣୁ ସବୁପ୍ରକାରେ ଯତ୍ନପୂର୍ବକ ମାତା-ପିତାଙ୍କ ସେବା କରିବା ଉଚିତ । ଯେ ମାତା-ପିତାଙ୍କୁ ପ୍ରଦକ୍ଷିଣ କରେ, ସେ, ଜାଣନ୍ତୁ ସାତଦ୍ୱୀପଯୁକ୍ତ ସାରା ପୃଥିବୀ ପ୍ରଦକ୍ଷିଣ କରେ । ମାତା-ପିତାଙ୍କୁ ପ୍ରଣାମ କରିବା ସମୟରେ ଯାହାର ହାତ, ମୁଣ୍ଡ ଓ ଆଣ୍ଠୁ ଭୂମିରେ ଲାଗେ, ସେ ଅକ୍ଷୟ ସ୍ୱର୍ଗ ପ୍ରାପ୍ତ ହୁଏ ।* ଯେ ପର୍ଯ୍ୟନ୍ତ ମାତା-ପିତାଙ୍କର ଚରଣ ଧୂଳି

---

* ପିତ୍ରୋରର୍ଚାଥ ପତ୍ୟୁଶ୍ଚ ସମଃ(ସାମ୍ୟଂ) ସର୍ବଜନେଷୁ ଚ । ମିତ୍ରାଦ୍ରୋହୋ ବିଷ୍ଣୁଭକ୍ତିରେତେ ପଞ୍ଚ ମହାମଖାଃ ॥
ପ୍ରାକ୍ ପିତ୍ରୋରର୍ଚୟା ବିପ୍ରା ଯଦ୍ଧର୍ମଂ ସାଧୟେନ୍ନରଃ । ନ ତତ୍‌କ୍ରତୁଶତୈରେବ ତୀର୍ଥଯାତ୍ରାଦିଭିର୍ଭୁବି ॥
ପିତା ଧର୍ମଃ ପିତା ସ୍ୱର୍ଗଃ ପିତା ହି ପରମଂ ତପଃ । ପିତରି ପ୍ରୀତିମାପନ୍ନେ ପ୍ରୀୟନ୍ତେ ସର୍ବଦେବତାଃ ॥
ପିତରୋ ଯସ୍ୟ ତୃପ୍ୟନ୍ତି ସେବୟା ଚ ଗୁଣେନ ଚ । ତସ୍ୟ ଭାଗୀରଥୀସ୍ନାନମହନ୍ୟହନି ବର୍ତତେ ॥
ସର୍ବତୀର୍ଥମୟୀ ମାତା ସର୍ବଦେବମୟଃ ପିତା । ମାତରଂ ପିତରଂ ତସ୍ମାତ୍ ସର୍ବଯତ୍ନେନ ପୂଜୟେତ୍ ॥
ମାତରଂ ପିତରଂ ଚୈବ ଯସ୍ତୁ କୁର୍ଯ୍ୟାତ୍ ପ୍ରଦକ୍ଷିଣମ୍ । ପ୍ରଦକ୍ଷିଣୀକୃତା ତେନ ସପ୍ତଦ୍ୱୀପା ବସୁନ୍ଧରା ॥
ଜାନୁନୀ ଚ କରୌ ଯସ୍ୟ ପିତ୍ରୋଃ ପ୍ରଣମତଃ ଶିରଃ । ନିପତନ୍ତି ପୃଥିବ୍ୟାଂ ଚ ସୋଽକ୍ଷୟଂ ଲଭତେ ଦିବମ୍ ॥
(ପଦ୍ମ. ପୁ., ସୃଷ୍ଟି ଖ. ୪୭/୭-୧୩)

ପୁତ୍ରର ମସ୍ତକ ଓ ଶରୀରରେ ଲାଗିରହେ, ସେପର୍ଯ୍ୟନ୍ତ ସେ ଶୁଦ୍ଧ ରହେ । ଯେଉଁ ପୁତ୍ର ମାତା-ପିତାଙ୍କର ଚରଣକମଳର ଜଳ ପାନ କରେ, ତାର କୋଟି କୋଟି ଜନ୍ମର ପାପ ନଷ୍ଟ ହୋଇଯାଏ । ସେହି ମନୁଷ୍ୟ ସଂସାରରେ ଧନ୍ୟ । ଯେଉଁ ନୀଚ ପୁରୁଷ ମାତା-ପିତାଙ୍କ ଆଜ୍ଞା ଉଲ୍ଲଂଘନ କରେ, ସେ ମହାପ୍ରଳୟ ପର୍ଯ୍ୟନ୍ତ ନରକରେ ବାସ କରେ । ଯେ ରୋଗୀ, ବୃଦ୍ଧ, ଜୀବିକାରହିତ, ଅନ୍ଧ ଓ ବଧିର ପିତାଙ୍କୁ ଛାଡ଼ି ଚାଲିଯାଏ, ସେ ଭୟଙ୍କର ନରକରେ ପଡ଼େ ।* କେବଳ ସେତିକି ନୁହେଁ; ତାକୁ ଅନ୍ତ୍ୟଜ, ମ୍ଳେଚ୍ଛ ଓ ଚଣ୍ଡାଳମାନଙ୍କ ଯୋନିରେ ଜନ୍ମ ନେବାକୁ ପଡ଼େ । ମାତା-ପିତାଙ୍କ ପାଳନପୋଷଣ ନ କଲେ ସମସ୍ତ ପୁଣ୍ୟ ନାଶ ହୋଇଯାଏ । ମାତା-ପିତାଙ୍କୁ ଆରାଧନା ନ କରି ପୁତ୍ର ତୀର୍ଥ ଓ ଦେବତାମାନଙ୍କର ସେବା କଲେ ମଧ୍ୟ ତାକୁ ସେସବୁର ଫଳ ମିଳେ ନାହିଁ ।

''ହେ ବ୍ରାହ୍ମଣଗଣ ! ଏହି ବିଷୟରେ ମୁଁ ଗୋଟିଏ ପ୍ରାଚୀନ ଇତିହାସ କହୁଛି; ଯତ୍ନପୂର୍ବକ ଶୁଣ । ଏହା ଶ୍ରବଣ କଲେ ଭୂତଳରେ ତୁମମାନଙ୍କୁ କେବେ ବି ମୋହ ଗ୍ରାସ କରିବ ନାହିଁ ।—

**ପୂର୍ବକାଳର କଥା** — ନରୋତ୍ତମ ନାମରେ ଜଣେ ବ୍ରାହ୍ମଣ ଥିଲେ । ସେ ନିଜର ମାତା-ପିତାଙ୍କର ସେବା ନ କରି ତୀର୍ଥ ସେବନ କରିବାକୁ ବାହାରିଗଲେ । ତୀର୍ଥରେ ବୁଲିବା ସମୟରେ ସେହି ବ୍ରାହ୍ମଣଙ୍କର ବସ୍ତ୍ର ପ୍ରତିଦିନ ଆକାଶରେ ପବନରେ ହିଁ ଶୁଖୁଥିଲା । ଏହାଦ୍ୱାରା ତାଙ୍କ ମନରେ ବଡ଼ ଅହଂକାର ଆସିଗଲା । ସେ ଭାବିଲେ, ମୋ ପରି ପୁଣ୍ୟାତ୍ମା ଓ ଯଶସ୍ୱୀ ହୋଇ ଦ୍ୱିତୀୟ କେହି ନାହିଁ । ଦିନେ ସେ ଉପରକୁ ମୁହଁ କରି ଏକଥା କହୁଥିଲେ, ସେତିକିବେଳେ ଗୋଟିଏ ବଗ ତାଙ୍କ ମୁହଁ ଉପରେ ମଳ ତ୍ୟାଗ କରିଦେଲା; ତେଣୁ ସେହି ବ୍ରାହ୍ମଣ କ୍ରୋଧାନ୍ୱିତ ହୋଇ ତାକୁ ଅଭିଶାପ ଦେଇଦେଲେ । ବିଚରା ବଗ ପାଉଁଶ ହୋଇ ତଳେ ଖସିପଡ଼ିଲା । ବଗର ମୃତ୍ୟୁ ହେବା ଦେଖି ନରୋତ୍ତମଙ୍କ ମନରେ ମହାମୋହ ପ୍ରବେଶ କଲା । ସେହି ପାପ ଯୋଗୁଁ ତାଙ୍କର ବସ୍ତ୍ର ଆଉ ଆକାଶରେ ଶୁଖିଲା ନାହିଁ । ତାହା ଦେଖି ତାଙ୍କୁ ବଡ଼ ଦୁଃଖ ଲାଗିଲା । ଏ ଭିତରେ ଆକାଶବାଣୀ ହେଲା, ''ହେ ବ୍ରାହ୍ମଣ !

* ରୋଗିଣଂ ଚାପି ବୃଦ୍ଧଂ ଚ ପିତରଂ ବୃତ୍ତିକର୍ଶିତମ୍ । ବିକଳଂ ନେତ୍ରକର୍ଣାଭ୍ୟାଂ ତ୍ୟକ୍ତ୍ୱା ଗଚ୍ଛେଚ୍ଚ ରୌରବମ୍ ॥
(ପଦ୍ମ ପୁ., ସୃଷ୍ଟି ଖ.୪୭/୧୯)

ତୁମେ ପରମ ଧର୍ମାତ୍ମା ମୂକ ଚଣ୍ଡାଳଙ୍କ ପାଖକୁ ଯାଅ । ସେଠାରେ ତୁମକୁ ଧର୍ମଜ୍ଞାନ ମିଳିବ । ତାଙ୍କ ଉପଦେଶ ତୁମ ପାଇଁ କଲ୍ୟାଣପ୍ରଦ ହେବ ।''

ଆକାଶବାଣୀ ଶୁଣି ବ୍ରାହ୍ମଣ ମୂକ ଚଣ୍ଡାଳଙ୍କ ଘରକୁ ଗଲେ । ସେଠାକୁ ଯାଇ ସେ ଦେଖିଲେ, ସେହି ଚଣ୍ଡାଳ ନିଜ ମାତା-ପିତାଙ୍କ ସେବାରେ ଲାଗିଛନ୍ତି । ଶୀତଦିନେ ସେ ନିଜ ମାତା-ପିତାଙ୍କ ସ୍ନାନ ପାଇଁ ଗରମ ପାଣି କରି ଦେଉଥିଲେ, ସେମାନଙ୍କ ଦେହରେ ତେଲ ମାଲିସ କରୁଥିଲେ; ସେକି ହେବାପାଇଁ ନିଆଁ ଜଳାଉଥିଲେ, ଖାଇବା ପରେ ସେମାନଙ୍କୁ ପାନ ଖାଇବାକୁ ଦେଉଥିଲେ ଓ ପିନ୍ଧିବାକୁ ଲୁଗାପଟା ଯୋଗାଇ ଦେଉଥିଲେ । ପ୍ରତିଦିନ ଖାଇବାକୁ କିଛି ମିଷ୍ଟାନ୍ନ ଦେଉଥିଲେ ଓ ବସନ୍ତ ଋତୁରେ ସୁଗନ୍ଧ ଫୁଲମାଳା ପିନ୍ଧାଉଥିଲେ । ଅନ୍ୟ ଯାହା ବି ଖାଦ୍ୟପଦାର୍ଥ ମିଳୁଥିଲା, ତାହା ସେମାନଙ୍କୁ ବି ଦେଉଥିଲେ ଓ ସେମାନଙ୍କର ବିଭିନ୍ନ ଆବଶ୍ୟକତା ପୂର୍ଣ୍ଣ କରୁଥିଲେ । ଖରାଦିନେ ମାତା-ପିତାଙ୍କୁ ପଙ୍ଖା କରୁଥିଲେ । ଏହିପରି ପ୍ରତିଦିନ ସେମାନଙ୍କର ସେବା କରିବା ପରେ ହିଁ ସେ ଭୋଜନ କରୁଥିଲେ । ମାତା-ପିତାଙ୍କ କ୍ଳାନ୍ତି ଓ କଷ୍ଟ ଦୂର କରିବା ତାଙ୍କର ନିତ୍ୟକର୍ମ ହୋଇଯାଇଥିଲା । ଏପରି ପୁଣ୍ୟକର୍ମ ହେତୁ ସେହି ଚଣ୍ଡାଳଙ୍କ ଘର କୌଣସି ଆଧାର ଓ ଖମ୍ବ ବିନା ଆକାଶରେ ଝୁଲୁଥିଲା । ସେହି ଘରେ ତ୍ରିଭୁବନର ସ୍ୱାମୀ ଭଗବାନ୍ ଶ୍ରୀହରି ସୁନ୍ଦର ବ୍ରାହ୍ମଣରୂପ ଧରି ନିତ୍ୟ କ୍ରୀଡ଼ା କରୁଥିଲେ । ସେହି ସତ୍ୟସ୍ୱରୂପ ପରମାତ୍ମା ନିଜର ମହାନ୍ ସତ୍ୟମୟ ତେଜସ୍ୱୀ ବିଗ୍ରହ ଧରି ସେହି ଚଣ୍ଡାଳଙ୍କ ଘରର ଶୋଭା ବଢ଼ାଉଥିଲେ । ଏସବୁ ଦେଖି ବ୍ରାହ୍ମଣ ଅତି ଆଶ୍ଚର୍ଯ୍ୟ ହୋଇଗଲେ । **ସେ ମୂକ ଚଣ୍ଡାଳଙ୍କୁ କହିଲେ** – ''ଟିକିଏ ଆସ; ମୁଁ ତୁମକୁ ସମସ୍ତ ଜଗତର ମଙ୍ଗଳ ନିମନ୍ତେ କେତୋଟି କଥା ପଚାରିବି; ମୋତେ ତାହା ବୁଝାଇ କହିଦେବ ।''

**ମୂକ ଚଣ୍ଡାଳ କହିଲେ,** ''ହେ ବିପ୍ର ! ଏବେ ମୁଁ ମାତା-ପିତାଙ୍କ ସେବା କରୁଛି, ଆପଣଙ୍କ ପାଖକୁ କିପରି ଆସିବି ? ଏମାନଙ୍କୁ ପୂଜା କରିସାରି ଆପଣଙ୍କ ପାଖକୁ ଆସିବି; ସେ ପର୍ଯ୍ୟନ୍ତ ମୋ ଦ୍ୱାରରେ ରହନ୍ତୁ, ମୁଁ ଆପଣଙ୍କ ସତ୍କାର କରିବି ।''

ଚଣ୍ଡାଳ ଏତିକି କହିବାମାତ୍ରେ ବ୍ରାହ୍ମଣ ଅଗ୍ନିଶର୍ମା ହୋଇ କହିଲେ,

"ମୋ ପରି ବ୍ରାହ୍ମଣର ସେବା ଛାଡ଼ି ତୋ ପାଇଁ କେଉଁ କାମ ଏତେ ବଡ଼ ହୋଇପାରେ ?"

**ଗୃଣ୍ଡାଳ କହିଲେ,** "ବାବା ! ବୃଥାରେ କାହିଁକି ରାଗୁଛନ୍ତି; ମୁଁ ବଗ ନୁହେଁ । ଆପଣଙ୍କ କ୍ରୋଧ ବଗ ଉପରେ ହିଁ ଫଳିପାରିବ; ଅନ୍ୟ କାହା ଉପରେ ନୁହେଁ । ଏଥର ଆପଣଙ୍କ ଧୋତି ଆକାଶରେ ନା ଶୁଖୁଛି ଓ ନା ରହିପାରୁଛି । ଏଣୁ ଆକାଶବାଣୀ ଶୁଣି ଆପଣ ମୋ ଘରକୁ ଆସିଛନ୍ତି । କିଛି ସମୟ ଅପେକ୍ଷା କଲେ ମୁଁ ଆପଣଙ୍କ ପ୍ରଶ୍ନର ଉତ୍ତର ଦେବି; ନାହିଁ ତ ପତିବ୍ରତା ସ୍ତ୍ରୀଙ୍କ ପାଖକୁ ଯାଆନ୍ତୁ । ହେ ଦ୍ୱିଜଶ୍ରେଷ୍ଠ ! ପତିବ୍ରତାଙ୍କୁ ଦର୍ଶନ କଲେ ଆପଣଙ୍କର ଇଷ୍ଟ ସିଦ୍ଧ ହେବ ।"

**ବ୍ୟାସଦେବ କହିଗ୍ଲିଲେ** – ତା'ପରେ ବ୍ରାହ୍ମଣରୂପଧାରୀ ଭଗବାନ୍ ଶ୍ରୀବିଷ୍ଣୁ ଗୃଣ୍ଡାଳଘରୁ ବାହାରି ସେହି ଦ୍ୱିଜଙ୍କୁ କହିଲେ, 'ଗ୍ଲ ମୁଁ ପତିବ୍ରତା ଦେବୀଙ୍କ ଘରକୁ ଯାଉଛି ।' ବ୍ରାହ୍ମଣ ନରୋତ୍ତମ ଟିକିଏ ଭାବିବା ପରେ ତାଙ୍କ ସହିତ ଗ୍ଲିଲେ । ତାଙ୍କ ମନରେ ବଡ଼ ବିସ୍ମୟ ଜାତ ହେଉଥିଲା । ସେ ବାଟରେ ଭଗବାନଙ୍କୁ ପଗ୍ୱରିଲେ, "ହେ ବିପ୍ରବର ! ଯେଉଁଠି ସ୍ତ୍ରୀମାନେ ରହନ୍ତି, ଆପଣ ସେହି ଗୃଣ୍ଡାଳଘରେ କାହିଁକି ବାସ କରନ୍ତି ?"

**ବ୍ରାହ୍ମଣରୂପଧାରୀ ଭଗବାନ୍ କହିଲେ,** "ହେ ବିପ୍ରବର ! ବର୍ତ୍ତମାନ ଆପଣଙ୍କ ହୃଦୟ ଶୁଦ୍ଧ ନୁହେଁ, ପ୍ରଥମେ ପତିବ୍ରତା ଆଦିଙ୍କୁ ଦର୍ଶନ କରନ୍ତୁ, ତା ପରେ ମୋତେ ଭଲଭାବରେ ଜାଣିପାରିବେ ।"

**ବ୍ରାହ୍ମଣ ପଗ୍ୱରିଲେ,** "ହେ ବନ୍ଧୁ ! ପତିବ୍ରତା କିଏ ? ତାହାର ଶାସ୍ତ୍ରଜ୍ଞାନ କେତେ ? ମୁଁ ତା ପାଖକୁ କାହିଁକି ଯାଉଛି, ତାହା ବି ମୋତେ କହନ୍ତୁ ।"

**ଶ୍ରୀଭଗବାନ୍ କହିଲେ,** "ହେ ବ୍ରହ୍ମନ୍ ! ନଦୀମାନଙ୍କ ମଧ୍ୟରେ ଗଙ୍ଗା, ସ୍ତ୍ରୀମାନଙ୍କ ମଧ୍ୟରେ ପତିବ୍ରତା ଓ ଦେବତାମାନଙ୍କ ମଧ୍ୟରେ ଶ୍ରୀବିଷ୍ଣୁ ହେଉଛନ୍ତି ଶ୍ରେଷ୍ଠ । ଯେଉଁ ପତିବ୍ରତା ନାରୀ ପ୍ରତିଦିନ ନିଜ ପତିଙ୍କର ହିତସାଧନରେ ଲାଗି ରହିଥାଏ, ସେ ନିଜର ପିତୃକୁଳ ଓ ପତିକୁଳ ଉଭୟକୁ ଶହ ଶହ ବଂଶ ପର୍ଯ୍ୟନ୍ତ ଉଦ୍ଧାର କରିଦିଏ ।*"

* ପତିବ୍ରତା ଚ ଯା ନାରୀ ପତ୍ୟୁର୍ନିତ୍ୟଂ ହିତେ ରତା । କୁଳଦ୍ୱୟସ୍ୟ ପୁରୁଷାନୁଦ୍ଧରେତ୍ସା ଶତଂ ଶତମ୍ ॥
(ପଦ୍ମ ପୁ.-ସୃଷ୍ଟି ଖଂ-୪୭/୫୧)

**ବ୍ରାହ୍ମଣ ପଚ୍ଚାରିଲେ,** "ହେ ବ୍ରାହ୍ମଣଶ୍ରେଷ୍ଠ ! କେଉଁ ସ୍ତ୍ରୀ ପତିବ୍ରତା ? ପତିବ୍ରତାର ଲକ୍ଷଣ କ'ଣ ? ଏସବୁ ବିଷୟ ମୋତେ ଭଲରୂପେ ବୁଝାଇଦିଅନ୍ତୁ ।"

**ଶ୍ରୀଭଗବାନ୍ କହିଲେ,** "ଯେଉଁ ସ୍ତ୍ରୀ ପୁତ୍ର ଅପେକ୍ଷା ଶତଗୁଣ ସ୍ନେହରେ ପତିଙ୍କୁ ଆରାଧନା କରନ୍ତି, ପତିଙ୍କୁ ରାଜା ପରି ଭୟ କରନ୍ତି ଓ ପତିଙ୍କୁ ଭଗବାନ୍ ବୋଲି ଭାବନ୍ତି, ସେ ପତିବ୍ରତା । ଯେ ଗୃହକାର୍ଯ୍ୟ କରିବାରେ ଦାସୀ, ରମଣକାଳରେ ବେଶ୍ୟା, ଭୋଜନ ସମୟରେ ମାଆ ପରି ଆଚରଣ କରନ୍ତି ଓ ଯେ ବିପଦରେ ସ୍ୱାମୀଙ୍କୁ ଭଲ ପରାମର୍ଶ ଦେଇ ମନ୍ତ୍ରୀ ପରି କର୍ମ କରନ୍ତି, ସେହି ସ୍ତ୍ରୀଙ୍କୁ ପତିବ୍ରତା ବୋଲି କୁହାଯାଏ । ଯେ କାୟମନୋବାକ୍ୟରେ କେବେ ବି ପତିଙ୍କ ଆଜ୍ଞା ଉଲ୍ଲଘଂନ କରନ୍ତି ନାହିଁ ତଥା ସର୍ବଦା ପତିଙ୍କ ଭୋଜନ ପରେ ହିଁ ଭୋଜନ କରନ୍ତି, ସେହି ସ୍ତ୍ରୀ ପତିବ୍ରତା ବୋଲି ଜାଣିବା ଉଚିତ । ଯେଉଁ ଶଯ୍ୟାରେ ପତି ଶୁଅନ୍ତି, ସେଠାରେ ଯେ ପ୍ରତିଦିନ ଯତ୍ନପୂର୍ବକ ତାଙ୍କର ପୂଜା କରନ୍ତି, ଯାହାଙ୍କ ମନରେ ପତିଙ୍କ ପ୍ରତି କେବେ ଈର୍ଷା ସୃଷ୍ଟି ହୁଏ ନାହିଁ, କୃପଣତା ଆସେ ନାହିଁ ଓ ଯେ ମାନ ବି କରନ୍ତି ନାହିଁ, ପତିଙ୍କ ଆଡୁ ଆଦର ମିଳୁ କିମ୍ବା ଅନାଦର ମିଳୁ, ଉଭୟକୁ ଯେ ସମାନ ବୁଦ୍ଧିରେ ଗ୍ରହଣ କରନ୍ତି, ତାଙ୍କୁ ପତିବ୍ରତା କହନ୍ତି । ଯେଉଁ ସାଧ୍ୱୀ ସ୍ତ୍ରୀ ସୁନ୍ଦର ବେଶଧାରୀ ପରପୁରୁଷକୁ ଦେଖିଲେ ତାକୁ ଭାଇ, ପିତା ବା ପୁତ୍ର ବୋଲି ଭାବନ୍ତି, ସେ ମଧ୍ୟ ପତିବ୍ରତା ।* ହେ ବ୍ରାହ୍ମଣଶ୍ରେଷ୍ଠ ! ତୁମେ ସେହି ପତିବ୍ରତାଙ୍କ ପାଖକୁ ଯାଅ ଓ ତାଙ୍କୁ ନିଜର ମନୋରଥ ଶୁଣାଅ । ତାଙ୍କର ନାମ ଶୁଭା । ସେ ରୂପବତୀ, ଯୁବତୀ ଓ ଦୟାବତୀ । ସେ ବଡ଼ ଯଶସ୍ୱିନୀ ମଧ୍ୟ । ତାଙ୍କ ପାଖକୁ ଯାଇ ତୁମେ ନିଜ ହିତ କଥା ପଚ୍ଚାର ।"

---

* ପୁତ୍ରାଚ୍ଛତଗୁଣଂ ସ୍ନେହାଦ୍ରାଜାନଂ ଚ ଭୟାଦଥ । ଆରାଧୟେଦ୍ ପତିଂ ଶୌରିଂ ଯା ପଶ୍ୟେତ୍ ସା ପତିବ୍ରତା ॥
କାର୍ୟ୍ୟେ ଦାସୀ ରତୌ ବେଶ୍ୟା ଭୋଜନେ ଜନନୀସମା । ବିପତ୍ସୁ ମନ୍ତ୍ରିଣୀ ଭର୍ତ୍ତୁଃ ସା ଚ ଭାର୍ଯ୍ୟା ପତିବ୍ରତା ॥
ଭର୍ତ୍ତୁରାଜ୍ଞାଂ ନ ଲଂଘେଦ୍ୟା ମନୋବାକ୍କାୟକର୍ମଭିଃ । ଭୁକ୍ତେ ପତୌ ସଦାଗ୍ନତ୍ତି ସା ଚ ଭାର୍ଯ୍ୟା ପତିବ୍ରତା ॥
ଯସ୍ୟାଂ ଯସ୍ୟାଂ ତୁ ଶଯ୍ୟାୟାଂ ପତିସ୍ସ୍ୱପିତି ଯତ୍ନତଃ । ତତ୍ର ତତ୍ର ଚ ସା ଭର୍ତ୍ତୁରର୍ଚ୍ଚ୍ୟଂ କରୋତି ନିତ୍ୟଶଃ ॥
ନୈବ ମତ୍ସରତାଂ ଯାତି ନ କାର୍ପଣ୍ୟଂ ନ ମାନିନୀ । ମାନେଽମାନେ ସମାନତ୍ୱଂ ଯା ପଶ୍ୟେତ୍ ସା ପତିବ୍ରତା ॥
ସୁବେଷଂ ଯା ନରଂ ଦୃଷ୍ଟ୍ୱା ଭ୍ରାତରଂ ପିତରଂ ସୁତମ୍ । ମନ୍ୟତେ ଚ ପରଂ ସାଧ୍ୱୀ ସା ଚ ଭାର୍ଯ୍ୟା ପତିବ୍ରତା ॥
(ପଦ୍ମ ପୁ., ସୃଷ୍ଟି ଖଂ ୪୭/୫୫-୬୦)

**ବ୍ୟାସଦେବ କହିଚ୍ଛଲିଲେ,** "ଏହିପରି କହି ଭଗବାନ୍ ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ । ତାଙ୍କୁ ଅଦୃଶ୍ୟ ହୋଇଯିବାର ଦେଖି ବ୍ରାହ୍ମଣ ବଡ଼ ଆଶ୍ଚର୍ଯ୍ୟ ହୋଇଗଲେ । ସେ ପତିବ୍ରତାଙ୍କ ଘରକୁ ଯାଇ ତା' ବିଷୟରେ ପଚ୍ଚରିଲେ । ଅତିଥିଙ୍କ ଡାକ ଶୁଣି ପତିବ୍ରତା ସ୍ତ୍ରୀ ଅବିଳମ୍ବେ ଘରୁ ବାହାରି ଆସିଲେ ଓ ବ୍ରାହ୍ମଣଙ୍କୁ ଦେଖି ଦ୍ୱାରରେ ଠିଆ ହୋଇଗଲେ । ତାଙ୍କୁ ଦେଖି ବ୍ରାହ୍ମଣ ପ୍ରସନ୍ନତାପୂର୍ବକ କହିଲେ, "ହେ ଦେବି ! ତୁମେ ଯେପରି ଦେଖୁଛ ଓ ବୁଝୁଛ, ସେହି ଅନୁସାରେ ନିଜେ ଚିନ୍ତା କରି ମୋ ପାଇଁ ପ୍ରିୟ ଏବଂ ହିତ କଥା କ'ଣ, ତାହା କୁହ ।"

**ପତିବ୍ରତା କହିଲେ,** "ହେ ବ୍ରହ୍ମନ୍ ! ଏବେ ମୋତେ ମୋ ପତିଦେବଙ୍କୁ ପୂଜା କରିବାକୁ ହେବ; ଏଣୁ ମୋର ସମୟ ନାହିଁ; ତେଣୁ ଆପଣଙ୍କ କାର୍ଯ୍ୟ ପଛେ କରିବି । ଆପଣ ମୋର ଆତିଥ୍ୟ ଗ୍ରହଣ କରନ୍ତୁ ।"

**ବ୍ରାହ୍ମଣ କହିଲେ,** "ହେ କଲ୍ୟାଣି ! ମୋର ଏବେ ଭୋକ, ଶୋଷ କି କ୍ଳାନ୍ତି ନାହିଁ । ମୋତେ ମୋର ମଙ୍ଗଳ କିପରି ହେବ, ତାହା କହ; ନ ହେଲେ ମୁଁ ତୁମକୁ ଅଭିଶାପ ଦେଇଦେବି ।"

**ତାହା ଶୁଣି ସେହି ପତିବ୍ରତା କହିଲେ**—"ହେ ବ୍ରାହ୍ମଣ ! ମୁଁ ବକ ନୁହେଁ; ଆପଣ ଧର୍ମ ତୁଳାଧାରଙ୍କ ପାଖକୁ ଯାଆନ୍ତୁ ଓ ତାଙ୍କୁ ନିଜ ହିତକଥା ପଚ୍ଚରନ୍ତୁ ।" ଏପରି କହି ସେହି ଭାଗ୍ୟବତୀ ପତିବ୍ରତା ଘରଭିତରକୁ ଚ୍ଛଲିଗଲେ । ସେହି ବ୍ରାହ୍ମଣ ଚ୍ଛଣ୍ଡାଳ ଘରେ ଯାହାଙ୍କୁ ଦେଖୁଥିଲେ, ସେଠାରେ ମଧ୍ୟ ସେହି ବ୍ରାହ୍ମଣରୂପଧାରୀ ଭଗବାନଙ୍କୁ ଦେଖିଲେ । ତାଙ୍କୁ ଦେଖି ସେ ବଡ଼ ବିସ୍ମୟରେ ପଡ଼ିଗଲେ ଓ ଟିକିଏ ଭାବି, ଚିନ୍ତି ତାଙ୍କ ପାଖକୁ ଗଲେ । ଘର ଭିତରେ ସେ ସେହି ହସହସମୁଖ ବ୍ରାହ୍ମଣ ଓ ସେହି ପତିବ୍ରତାଙ୍କୁ ଦେଖିବାକୁ ପାଇଲେ । ତାଙ୍କୁ ଦେଖି ନରୋତ୍ତମ କହିଲେ, 'ହେ ମଉସା ! ଅନ୍ୟସ୍ଥାନରେ ଯାହା ଘଟିଥିଲା, ଏହି ପତିବ୍ରତା ଦେବୀ ମଧ୍ୟ ତାହା କହିଦେଲେ ଓ ଚ୍ଛଣ୍ଡାଳ ମଧ୍ୟ ତାହା କହିଥିଲା । ଏ ଲୋକେ ଅତୀତ ଘଟଣାକୁ କିପରି ଜାଣିଲେ ? ଏହା ମୋତେ ବଡ଼ ଆଶ୍ଚର୍ଯ୍ୟ ଲାଗୁଛି । ଏହାଠାରୁ ବଳି ଆଉ ଅଧିକ ଆଶ୍ଚର୍ଯ୍ୟ କଥା କ'ଣ ହୋଇପାରେ !"

**ଶ୍ରୀଭଗବାନ୍ କହିଲେ,** "ହେ ମହାଶୟ ! ମହାତ୍ମାପୁରୁଷମାନେ ନିଜର

ପୁଣ୍ୟ ଓ ସଦାଗ୍ୱର-ଶକ୍ତିବଳରେ ସବୁର କାରଣ ଜାଣିପାରନ୍ତି । ତାହା ଦେଖି ତୁମେ ବିସ୍ମିତ ହେଉଛ । ହେ ମୁନି ! କୁହ, ବର୍ତ୍ତମାନ ଏହି ପତିବ୍ରତା ତୁମକୁ କ'ଣ କହିଛନ୍ତି ?'' ବ୍ରାହ୍ମଣ କହିଲେ– ''ସେ ତ ମୋତେ ଧର୍ମ ତୁଳାଧାରଙ୍କୁ ପଗ୍ୱର ବୋଲି ଉପଦେଶ ଦେଇଛନ୍ତି ।''

**ଶ୍ରୀଭଗବାନ୍ କହିଲେ**, ''ହେ ମହାଶୟ ! ଆସ, ମୁଁ ବି ତାଙ୍କ ପାଖକୁ ଯାଉଛି ।' ଏପରି କହି ଭଗବାନ୍ ଯେତେବେଳେ ଗ୍ୱଲିବାକୁ ଲାଗିଲେ, ସେତେବେଳେ ବ୍ରାହ୍ମଣ ପଗ୍ୱରିଲେ– ''ତୁଳାଧାର କେଉଁଠି ରହେ ?''

**ଶ୍ରୀଭଗବାନ୍ କହିଲେ**, ''ଯେଉଁଠି ଲୋକଙ୍କର ଭିଡ଼ ଲାଗିଥାଏ ଓ ନାନା ପ୍ରକାର ଦ୍ରବ୍ୟ ବିକ୍ରୟ ହୁଏ, ସେହି ବଜାରରେ ତୁଳାଧାର ବୈଶ୍ୟ ଏଠିସେଠି ବସି କିଣାବିକା କରନ୍ତି । ସେ କେବେ ବି କାୟମନୋବାକ୍ୟରେ କାହାରି ଅନିଷ୍ଟ କରନ୍ତି ନାହିଁ; ସେ ମିଛ କହନ୍ତି ନାହିଁ, କି ଦୁଷ୍ଟାମି କରନ୍ତି ନାହିଁ । ସେ ସବୁଲୋକଙ୍କ ହିତରେ ତତ୍ପର ରହନ୍ତି । ସେ ସବୁ ପ୍ରାଣୀଙ୍କ ଠାରେ ସମଭାବ ରଖନ୍ତି ତଥା ଢେଲା, ପଥର ଓ ସୁନାକୁ ସମାନ ବୋଲି ମନେକରନ୍ତି । ଲୋକେ ଗହମ, ଲୁଣ, ତେଲ, ଘିଅ, ଧାନ ତଥା ଅନ୍ୟାନ୍ୟ ସଂଗୃହୀତ ବସ୍ତୁ ସେ କହିବା ଦରରେ ନେଣ-ଦେଣ କରନ୍ତି । ମରଣ ଉପସ୍ଥିତ ହେଲେ ମଧ୍ୟ ସେ ସତ୍ୟ ଛଡ଼ା କେବେ ମିଥ୍ୟା କହନ୍ତି ନାହିଁ । ଏଣୁ ତାଙ୍କୁ ଲୋକେ ଧର୍ମ-ତୁଳାଧାର ବୋଲି କହନ୍ତି ।''

ଶ୍ରୀଭଗବାନ୍ ଏପରି କହିବାରୁ ବ୍ରାହ୍ମଣ ବଜାରକୁ ଯାଇ ତୁଳାଧାର ନାନାପ୍ରକାର ବସ୍ତୁ ବିକ୍ରି କରୁଥିବାର ଦେଖିଲେ । ସେ ବିକ୍ରି କରୁଥିବା ଜିନିଷ ବିଷୟରେ କଥାବାର୍ତ୍ତା କରୁଥିଲେ । ତାଙ୍କୁ ଗ୍ୱରିପଟୁ ଘେରି ବହୁତ ଲୋକ ଠିଆ ହୋଇଥିଲେ । ବ୍ରାହ୍ମଣଙ୍କୁ ଦେଖି ତୁଳାଧାର ମଧୁର ସ୍ୱରରେ ପଗ୍ୱରିଲେ, ''ହେ ଗୋସେଇଁ ! ଏଠାକୁ କିପରି ଆସିଲ ?''

**ବ୍ରାହ୍ମଣ କହିଲେ**, '' ମୋତେ ଧର୍ମ ଉପଦେଶ ଦିଅ, ମୁଁ ସେଇଥିପାଇଁ ତୁମ ପାଖକୁ ଆସିଛି ।''

**ତୁଳାଧାର କହିଲେ**, ''ହେ ଗୋସେଇଁ ! କିଣାବିକା କରୁଥିବା ଲୋକେ ମୋ ପାଖରେ ବସିଥିବା ଯାଏ, ମୁଁ ନିଶ୍ଚିନ୍ତ ହୋଇପାରିବି ନାହିଁ । ପ୍ରହରେ

ରାତି ପର୍ଯ୍ୟନ୍ତ ଏହି ଅବସ୍ଥା ଲାଗି ରହିବ । ଏଣୁ ଆପଣ ମୋ ଉପଦେଶ ମାନି ଧର୍ମାକର ପାଖକୁ ଯାଆନ୍ତୁ । ବଗର ମୃତ୍ୟୁ ଦ୍ୱାରା ଆପଣଙ୍କର କି ଦୋଷ ହେଲା ଓ ଆକାଶରେ ଧୋତି ଶୁଖାଇବାର ରହସ୍ୟ–ଏସବୁ କଥା ଆପଣଙ୍କୁ ଜଣା ପଡ଼ିଯିବ । ଧର୍ମାକରଙ୍କ ନାମ ଅଦ୍ରୋହକ । ସେ ଜଣେ ବଡ଼ ସଜ୍ଜନ । ତାଙ୍କ ପାଖକୁ ଯାଆନ୍ତୁ । ସେଠାରେ ତାଙ୍କ ଉପଦେଶ ଶୁଣିଲେ, ଆପଣଙ୍କ କାମନା ପୂର୍ଣ୍ଣ ହୋଇଯିବ ।''

ଏପରି କହି ତୁଳାଧାର କିଣା-ବିକାରେ ଲାଗିଗଲେ । ନରୋତ୍ତମ ବିପ୍ରରୂପଧାରୀ ଭଗବାନଙ୍କୁ ପଚ୍ଚାରିଲେ, ''ହେ ମଉସା ! ତୁଳାଧାରଙ୍କ କଥା ମାନି ମୁଁ ସେହି ଅଦ୍ରୋହକଙ୍କ ପାଖକୁ ଯିବି; କିନ୍ତୁ ମୁଁ ତାଙ୍କ ଘର ଜାଣିନାହିଁ । ମତେ ଟିକିଏ ସାହାଯ୍ୟ କରନ୍ତୁ ।''

**ଶ୍ରୀଭଗବାନ୍ କହିଲେ**, ''ଚ୍ଚାଲ, ମୁଁ ତୁମ ସାଥିରେ ତାଙ୍କ ଘରକୁ ଯିବି ।''

ତା'ପରେ ବାଟରେ ଯିବାବେଳେ **ବ୍ରାହ୍ମଣ ଭଗବାନ୍‌ଙ୍କୁ ପଚ୍ଚାରିଲେ,** ''ହେ ମଉସା ! ତୁଳାଧାର ତ ଦେବତାମାନଙ୍କୁ, ଋଷିମାନଙ୍କୁ ଏବଂ ପିତୃପୁରୁଷମାନଙ୍କୁ ତର୍ପଣ କରେ ନାହିଁ । କିନ୍ତୁ ଅନ୍ୟସ୍ଥାନରେ ଘଟିଥିବା ମୋ ବୃତ୍ତାନ୍ତ ସେ କିପରି ଜାଣିଲା ? ମୋତେ ବଡ଼ ବିସ୍ମୟ ଲାଗୁଛି । ଆପଣ ଏସବୁର କାରଣ କୁହନ୍ତୁ ।''

**ଶ୍ରୀଭଗବାନ୍ କହିଲେ**, ''ହେ ମହାଶୟ ! ସେ ସତ୍ୟ ଓ ସମତା ଦ୍ୱାରା ତିନିଲୋକକୁ ଜୟ କରିଛନ୍ତି; ତେଣୁ ତାଙ୍କ ଉପରେ ପିତୃପୁରୁଷ, ଦେବତା ତଥା ମୁନିମାନେ ମଧ୍ୟ ସନ୍ତୁଷ୍ଟ ରହନ୍ତି । ଏହିସବୁ କାରଣରୁ ହିଁ ସେ ଅତୀତ ଓ ଭବିଷ୍ୟତର ସବୁକଥା ଜାଣନ୍ତି । ସତ୍ୟଠାରୁ ବଳି ମହାନ୍ ଧର୍ମ ଓ ମିଥ୍ୟାଠାରୁ ବଳି ହୀନ ପାପ ନାହିଁ । * ଯେଉଁ ପୁରୁଷ ପାପରହିତ ଓ ସମଭାବରେ ସ୍ଥିତ, ଯାହାଙ୍କର ଚିତ୍ତ ଶତ୍ରୁ, ମିତ୍ର ଓ ଉଦାସୀନଙ୍କ ପ୍ରତି ସମାନ, ତାହାଙ୍କର ସକଳ ପାପ ନାଶ ହୋଇଯାଏ ଏବଂ ସେ ଭଗବାନଙ୍କ

* ସତ୍ୟେନସମଭାବେନ ଜିତଂ ତେନ ଜଗତ୍ତ୍ରୟମ୍ । ତେନାତୃପ୍ୟନ୍ତ ପିତରୋ ଦେବା ମୁନିଗଣୈଃ ସହ ॥
ଭୂତଭବ୍ୟପ୍ରବୃତ୍ତଂ ଚ ତେନ ଜାନାତି ଧାର୍ମିକଃ । ନାସ୍ତି ସତ୍ୟାତ୍ପରୋ ଧର୍ମୋ ନାନୃତାତ୍ପାତକଂ ପରମ୍ ॥
(ପଦ୍ମପୁରାଣ, ସୃଷ୍ଟି ଖ. ୪୭/୯୨-୯୩)

ସାନ୍ନିଧ୍ୟ ପ୍ରାପ୍ତ ହୁଅନ୍ତି । ସମତ୍ୱ ହିଁ ଧର୍ମ ଓ ସମତ୍ୱ ହିଁ ଉତ୍କୃଷ୍ଟ ତପସ୍ୟା । ଯାହାଙ୍କ ହୃଦୟରେ ସର୍ବଦା ସମତ୍ୱ ବିଦ୍ୟମାନ, ସେହି ପୁରୁଷ ସମସ୍ତ ଲୋକରେ ଶ୍ରେଷ୍ଠ; ତାଙ୍କୁ ଯୋଗୀମାନଙ୍କ ମଧ୍ୟରେ ଗଣନା କରିବା ଉଚିତ ଓ ଯେ ନିର୍ଲୋଭ ହୋଇଥାନ୍ତି, ଯେ ସର୍ବଦା ଏହିପରି ସମତ୍ୱପୂର୍ଣ୍ଣ ବ୍ୟବହାର କରନ୍ତି, ସେ ନିଜର ଅନେକ ପୁରୁଷ ଉଦ୍ଧାର କରିଦିଅନ୍ତି । ସେହି ପୁରୁଷଙ୍କ ଠାରେ ସତ୍ୟ, ଇନ୍ଦ୍ରିୟ-ସଂଯମ, ମନୋନିଗ୍ରହ, ଧୀରତା, ସ୍ଥିରତା, ନିର୍ଲୋଭତା ଓ ଆଳସ୍ୟହୀନତା ଇତ୍ୟାଦି ସଦ୍‌ଗୁଣ ପ୍ରତିଷ୍ଠିତ ହୋଇଥାଏ । ସମତ୍ୱର ପ୍ରଭାବରେ ଧର୍ମଜ୍ଞ ପୁରୁଷ ଦେବଲୋକ ଓ ମନୁଷ୍ୟଲୋକର ସମ୍ପୂର୍ଣ୍ଣ ବୃତ୍ତାନ୍ତ ଜାଣିପାରନ୍ତି । ତାଙ୍କ ଦେହରେ ଭଗବାନ୍ ବିଷ୍ଣୁ ବିରାଜମାନ କରନ୍ତି । ସତ୍ୟ ଓ ସରଳତା ଆଦି ଗୁଣରେ ତାଙ୍କ ସମାନ ଏହି ସଂସାରରେ ଅନ୍ୟ କେହି ନାହାନ୍ତି । ସେ ସାକ୍ଷାତ୍ ଧର୍ମସ୍ୱରୂପ ଓ ସେ ଏହି ଜଗତକୁ ଧାରଣ କରନ୍ତି ।''

**ବ୍ରାହ୍ମଣ କହିଲେ**, ''ହେ ବିପ୍ରବର ! ଆପଣଙ୍କ କୃପାରୁ ମୋତେ ତୁଳାଧାର କିପରି ସର୍ବଜ୍ଞ ହେଲେ, ତା'ର କାରଣ ଜଣା ପଡ଼ିଗଲା; ଏଥର ଅଦ୍ରୋହକଙ୍କର ବୃତ୍ତାନ୍ତ କହନ୍ତୁ ।''

**ଶ୍ରୀଭଗବାନ୍ କହିଲେ**, ''ହେ ବିପ୍ରବର ! ପୂର୍ବକାଳର କଥା । ଜଣେ ରାଜପୁତଙ୍କ ସ୍ତ୍ରୀଟି ବଡ଼ ସୁନ୍ଦରୀ ଓ ନବଯୁବତୀ ହୋଇଥାଏ । ସେ କାମଦେବଙ୍କ ପତ୍ନୀ ରତି ଓ ଇନ୍ଦ୍ରଙ୍କ ପତ୍ନୀ ଶଚିଙ୍କ ପରି ମନୋହାରିଣୀ ହୋଇଥାଏ । ରାଜପୁତ ଜଣକ ତାକୁ ନିଜ ପ୍ରାଣ ପରି ଭଲ ପାଉଥିଲେ । ସେହି ସୁନ୍ଦରୀ ତରୁଣୀର ନାମ ଥିଲା ସୁନ୍ଦରୀ । ଦିନେ ସେହି ରାଜପୁତଙ୍କୁ ରାଜକାର୍ଯ୍ୟରେ ହଠାତ୍ ବାହାରକୁ ଯିବାକୁ ପଡ଼ିଲା । ସେ ମନେ ମନେ ଭାବିଲେ, 'ମୁଁ ମୋର ପ୍ରାଣପ୍ରିୟା ଭାର୍ଯ୍ୟାକୁ କେଉଁଠି ରଖିବି ! କେଉଁଠି ରହିଲେ ତାର ସତୀତ୍ୱ ନିଶ୍ଚିତରୂପେ ରକ୍ଷା ହୋଇପାରିବ ?' ଏପରି ବିଚାର କରି କରି ଶେଷରେ ସେ ସେହି ଗୃହସ୍ଥ ଅଦ୍ରୋହକଙ୍କ ଘରକୁ ଆସିଲେ ଓ ତାଙ୍କୁ ନିଜ ସ୍ତ୍ରୀର ଭାର ଦେବାକୁ ପ୍ରସ୍ତାବ ବାଢ଼ିଲେ । ତାଙ୍କ କଥା ଶୁଣି ଅଦ୍ରୋହକଙ୍କୁ ବଡ଼ ବିସ୍ମୟ ଲାଗିଲା । ସେ କହିଲେ, ''ହେ ବାପା ! ମୁଁ ତୁମ ପିତା ନୁହେଁ, କି ଭାଇ ନୁହେଁ, କି ବାନ୍ଧବ ନୁହେଁ; ମୁଁ ତୁମ ପତ୍ନୀର ପିତା-

ମାତାଙ୍କ କୁଳର ମଧ୍ୟ ନୁହେଁ, କି ତୁମ ସୁହୃଦ୍‌ମାନଙ୍କ ମଧ୍ୟରୁ କେହି ନୁହେଁ; ତେଣୁ ମୋ ଘରେ ଏହାଙ୍କୁ ରଖି ତୁମେ କିପରି ନିଶ୍ଚିନ୍ତ ହୋଇପାରିବେ ?''

**ରାଜପୁତ ଜଣକ କହିଲେ,** ''ହେ ମହାତ୍ମା ! ଏହି ସଂସାରରେ ଆପଣଙ୍କ ପରି ଧର୍ମଜ୍ଞ ଓ ଜିତେନ୍ଦ୍ରିୟ ପୁରୁଷ ଅନ୍ୟ କେହି ନାହାନ୍ତି ।''

ତାହା ଶୁଣି **ଅଦ୍ରୋହକ** ସେହି ରାଜପୁତଙ୍କୁ **କହିଲେ,** ''ହେ ବାପା ! ମୋତେ ଦୋଷ ଦେବ ନାହିଁ । ଏହି ତ୍ରିଭୁବନମୋହିନୀ ତରୁଣୀକୁ ରକ୍ଷା କରିବାକୁ କେଉଁ ପୁରୁଷ ସମର୍ଥ ହୋଇପାରିବ ଭଲା !''

**ରାଜପୁତ କହିଲେ,** ''ମୁଁ ସବୁକଥା ଭଲଭାବରେ ବିଚାର କରି ହିଁ ଆପଣଙ୍କ ପାଖକୁ ଆସିଛି । ଇଏ ଆପଣଙ୍କ ଘରେ ରହୁ; ମୁଁ ଯାଉଛି ।''

ରାଜପୁତଜଣକ ଏପରି କହିବାରୁ **ଅଦ୍ରୋହକ କହିଲେ,** ''ହେ ବାପା ! ଏହି ନଗରରେ ଅନେକ କାମୀପୁରୁଷ ଅଛନ୍ତି । ଏଠାରେ କେଉଁ ସ୍ତ୍ରୀର ସତୀତ୍ୱ କିପରି ରକ୍ଷା ହୋଇପାରିବ !'' **ରାଜପୁତ ଜଣକ କହିଲେ,** ''ଯେପରି ହେଉ ଆପଣ ତାକୁ ରକ୍ଷା କରନ୍ତୁ; ମୁଁ ଏଥର ଯାଉଛି ।'' ଗୃହସ୍ଥ **ଅଦ୍ରୋହକ** ଧର୍ମସଙ୍କଟରେ ପଡ଼ି **କହିଲେ,** ''ହେ ବାପା ! ମୁଁ ଉଚିତ ଓ ହିତକର ବୁଝି ଏହାଙ୍କ ସହିତ ସର୍ବଦା ଅନୁଚିତ ବ୍ୟବହାର କରିବି ଓ ମୋର ବିଶ୍ୱାସ, ସେହି ଅବସ୍ଥାରେ ରହିଲେ ହିଁ ଏପରି ସ୍ତ୍ରୀ ସର୍ବଦା ମୋ ଘରେ ସୁରକ୍ଷିତା ହୋଇ ରହିପାରିବ । ଏଥିରେ ରାଜି ନ ହେଲେ ଏହି ଅରକ୍ଷ୍ୟ ବସ୍ତୁର ରକ୍ଷାପାଇଁ ତୁମେ ହିଁ କୌଣସି ଅନୁକୂଳ ଓ ପ୍ରିୟ ଉପାୟ କହ । ଏହାଙ୍କୁ ମୋ ଶେଯରେ ମୋର ସ୍ତ୍ରୀ ସହିତ ସାଙ୍ଗ ହୋଇ ଶୋଇବାକୁ ପଡ଼ିବ; ସେପରି ଶୋଇଲେ ମଧ୍ୟ ତୁମେ ଏହାକୁ ନିଜର ସ୍ତ୍ରୀ ବୋଲି ଗ୍ରହଣ କରିବ; ତା'ହେଲେ ଇଏ ରହିପାରିବ; ନ ହେଲେ ଏଠାରୁ ଚାଲିଯାଉ ।''

ଏହା ଶୁଣି **ରାଜପୁତ** କିଛି ସମୟ ବିଚାର କଲେ ଓ ତା'ପରେ କହିଲେ, ''ହେ ତାତ ! ମୁଁ ଆପଣଙ୍କ କଥା ସ୍ୱୀକାର କଲି । ଆପଣଙ୍କୁ ଯାହା ଅନୁକୂଳ ହେବ, ତାହା କରନ୍ତୁ ।' ଏପରି କହି ରାଜପୁତଜଣକ ନିଜ ସ୍ତ୍ରୀକୁ କହିଲେ, ''ହେ ସୁନ୍ଦରୀ ! ତୁମେ ଏହାଙ୍କ କଥାନୁସାରେ ସବୁ କାର୍ଯ୍ୟ କରିବ; ତୁମ ଉପରେ କୌଣସି ଦୋଷ ଆସିବ ନାହିଁ । ଏଥିପାଇଁ ମୋର

ଅନୁମତି ରହିଛି ।'' ଏହିପରି କହି ସେ ନିଜ ମହାରାଜଙ୍କ ଆଦେଶରେ ଗନ୍ତବ୍ୟ ସ୍ଥାନକୁ ଚ୍ୱଲିଗଲେ । ତା'ପରଠାରୁ ଅଦ୍ରୋହକ ଯେପରି କହିଥିଲେ, ସେପରି ହିଁ କଲେ । ସେହି ଧର୍ମାତ୍ମା ପ୍ରତିଦିନ ଦୁଇ ସ୍ତ୍ରୀଙ୍କ ମଝିରେ ଶୟନ କରୁଥିଲେ; ତଥାପି ସେ ନିଜ ଓ ପର ସ୍ତ୍ରୀ ବିଷୟରେ କେବେ ଧର୍ମରୁ ବିଚଳିତ ହେଉ ନ ଥିଲେ । ନିଜ ସ୍ତ୍ରୀର ସ୍ପର୍ଶରେ ହିଁ ତାଙ୍କୁ କାମୋପଭୋଗର ଇଚ୍ଛା ହେଉଥିଲା । ଏପଟେ ସେହି ରାଜପୁତଙ୍କ ସ୍ତ୍ରୀର ସ୍ତନ ମଧ୍ୟ ବାରମ୍ବାର ତାଙ୍କ ପିଠିରେ ଲାଗିଯାଉଥିଲା । କିନ୍ତୁ ମାତାର ସ୍ତନ ପ୍ରତି ବାଳକ ପୁତ୍ରର ଯେପରି ଭାବ ରହେ, ତାହାଙ୍କ ସ୍ତନ ପ୍ରତି ଅଦ୍ରୋହକଙ୍କର ସେହିପରି ଭାବ ରହିଥିଲା । ସେ ତାଙ୍କ ପ୍ରତି ମାତୃଭାବ ହିଁ ଦୃଢ଼ ରଖିଥିଲେ । କ୍ରମଶଃ ତାଙ୍କ ହୃଦୟରୁ ସ୍ତ୍ରୀଭୋଗ ଇଚ୍ଛା ଦୂର ହୋଇଯାଉଥିଲା । ଏହିପରି ଛଅମାସ ବିତିଗଲା ପରେ ସେହି ସୁନ୍ଦରୀଙ୍କ ସ୍ୱାମୀ ନଗରକୁ ଫେରିଲେ । ସେ ଲୋକଙ୍କୁ ଅଦ୍ରୋହକଙ୍କ ତଥା ନିଜ ସ୍ତ୍ରୀର ଚଳନ ବିଷୟରେ ପଚ୍ୱରିଲେ । ଲୋକମାନେ ବି ନିଜ ନିଜ ରୁଚି ଅନୁସାରେ ଉତ୍ତର ଦେଲେ । କେହି କେହି ରାଜପୁତଙ୍କ ବ୍ୟବସ୍ଥାକୁ ଉତ୍ତମ ବୋଲି କହିଲେ । କେତେକ ନବଯୁବକ ତାଙ୍କ କଥା ଶୁଣି ଆଶ୍ଚର୍ଯ୍ୟରେ ପଡ଼ିଗଲେ ଓ କିଛି ଲୋକ କହିଲେ, ''ଭାଇ ! ତୁମେ ନିଜ ସ୍ତ୍ରୀଙ୍କୁ ତାଙ୍କ ପାଖରେ ସମର୍ପି ଦେଇଛ ଓ ସେ ତାଙ୍କ ସହିତ ଶୋଉଛନ୍ତି । ସ୍ତ୍ରୀ ଓ ପୁରୁଷର ସଂସର୍ଗ ହେବା ପରେ ଦୁଇଜଣଙ୍କ ମନ କିପରି ଶାନ୍ତ ରହିପାରିବ, କହିଲ !'' ଅଦ୍ରୋହକ ନିଜ ଧର୍ମାଚରଣଶକ୍ତି ଧରି ଲୋକନିନ୍ଦା ଶୁଣିଲେ । ତାଙ୍କ ମନରେ ଲୋକନିନ୍ଦାରୁ ମୁକ୍ତ ହେବାପାଇଁ ଏକ ଶୁଭସଂକଳ୍ପ ଜାତ ହେଲା । ସେ ନିଜେ କାଠ ଯୋଗାଡ଼ କରି, ଗୋଟିଏ ବଡ଼ ଚିତା ପ୍ରସ୍ତୁତ କରି ସେଥିରେ ନିଆଁ ଲଗାଇଦେଲେ । ଚିତା ଜଳିଉଠିଲା । ଏହି ସମୟରେ ପ୍ରତାପୀ ରାଜପୁତ ଜଣକ ଆସି ଅଦ୍ରୋହକଙ୍କ ଘରେ ପହଞ୍ଚିଗଲେ । ସେ ସେଠାରେ ଅଦ୍ରୋହକଙ୍କୁ ତଥା ନିଜ ପତ୍ନୀକୁ ମଧ୍ୟ ଦେଖିଲେ । ପତ୍ନୀର ମୁଖ ପ୍ରସନ୍ନତାରେ ଫୁଟି ଉଠୁଥିଲା ଓ ଅଦ୍ରୋହକ ଅତ୍ୟନ୍ତ ବିଷାଦଯୁକ୍ତ ଥିଲେ । ସେହି ଦୁଇଜଣଙ୍କ ସ୍ଥିତି ଦେଖି **ରାଜପୁତ କହିଲେ**, ''ହେ ବନ୍ଧୁ ! ମୁଁ ଆପଣଙ୍କ ମିତ୍ର ଓ ବହୁତ ଦିନ ପରେ ଏଠାକୁ ଫେରିଛି । ଆପଣ ମୋ ସହିତ କାହିଁକି କଥାବାର୍ତ୍ତା କରୁନାହାଁନ୍ତି ?''

**ଅଦ୍ରୋହକ କହିଲେ**, "ହେ ମିତ୍ର ! ମୁଁ ତୁମ ହିତ ପାଇଁ ଯେଉଁ କର୍ମ କରିଛି, ତାହା ଲୋକନିନ୍ଦା ହେତୁ ବ୍ୟର୍ଥ ହୋଇଯାଇଛି । ଏଣୁ ମୁଁ ଅଗ୍ନିରେ ପ୍ରବେଶ କରିବି । ସମସ୍ତ ଦେବତା ଓ ମନୁଷ୍ୟ ମୋର ଏହି କାର୍ଯ୍ୟ ଦେଖନ୍ତୁ ।"

**ଶ୍ରୀଭଗବାନ୍ କହିଲେ**, "ଏପରି କହି ଅଦ୍ରୋହକ ଅଗ୍ନିରେ ପ୍ରବେଶ କଲେ । କିନ୍ତୁ ଅଗ୍ନି ତାଙ୍କ ଶରୀର, ବସ୍ତ୍ର ଓ କେଶକୁ ଜାଳିପାରିଲାନି । ଆକାଶରେ ଉପସ୍ଥିତ ଥିବା ସମସ୍ତ ଦେବତା ପ୍ରସନ୍ନ ହୋଇ ତାଙ୍କୁ ସାଧୁବାଦ ଦେବାକୁ ଲାଗିଲେ । ସମସ୍ତେ ଚାରିଆଡୁ ତାଙ୍କ ଉପରେ ଫୁଲ ବର୍ଷା କଲେ । ଯେଉଁ ଲୋକମାନେ ଅଦ୍ରୋହକ ଓ ରାଜପୁତ୍ରଙ୍କ ପତ୍ନୀଙ୍କ ସମ୍ବନ୍ଧରେ କଳଙ୍କପୂର୍ଣ୍ଣ କଥା କହିଥିଲେ, ସେମାନଙ୍କ ମୁହଁରେ ନାନାପ୍ରକାର କୁଷ୍ଠ ହୋଇଗଲା । ଦେବତାମାନେ ସେଠାରେ ଉପସ୍ଥିତ ହୋଇ, ଅଦ୍ରୋହକଙ୍କୁ ନିଆଁରୁ ଟାଣି ବାହାର କଲେ ଓ ପ୍ରସନ୍ନତାର ସହିତ ତାଙ୍କୁ ଦିବ୍ୟପୁଷ୍ପରେ ପୂଜା କଲେ । ତାଙ୍କ ଚରିତ ଶୁଣି ମୁନିମାନଙ୍କୁ ମଧ୍ୟ ବଡ଼ ବିସ୍ମୟ ଲାଗିଲା । ସମସ୍ତ ମୁନି ତଥା ବିଭିନ୍ନ ବର୍ଣ୍ଣର ଲୋକେ ଆସି ସେହି ମହାତେଜସ୍ୱୀ ମହାତ୍ମାଙ୍କୁ ପୂଜା କଲେ ଓ ସେ ବି ସମସ୍ତଙ୍କୁ ବିଶେଷ ଆଦର କଲେ । ସେହି ସମୟରେ ଦେବତା, ଅସୁର ଓ ମନୁଷ୍ୟମାନେ ମିଶି ତାଙ୍କ ନାମ ରଖିଦେଲେ **ସଜ୍ଜନାଦ୍ରୋହକ** । ତାଙ୍କ ଚରଣଧୂଳିରେ ପବିତ୍ର ହୋଇଥିବା କ୍ଷେତରେ ଏଥର ଅଧିକ ଉତ୍ପାଦନ ହେବାକୁ ଲାଗିଲା । **ଦେବତାମାନେ ରାଜପୁତଙ୍କୁ କହିଲେ**, 'ତୁମେ ନିଜ ସ୍ତ୍ରୀକୁ ସ୍ୱୀକାର କର । ଏହି ସଂସାରରେ ଅଦ୍ରୋହକଙ୍କ ପରି କୌଣସି ମନୁଷ୍ୟ ନାହାଁନ୍ତି; ଏ ସମୟରେ ଏହି ପୃଥିବୀରେ ଏପରି ଅନ୍ୟ କୌଣସି ପୁରୁଷ ନାହିଁ, ଯାହାକୁ କି କାମ ଓ ଲୋଭ ପରାସ୍ତ ନ କରିଛି । ଦେବତା, ଅସୁର, ମନୁଷ୍ୟ, ରାକ୍ଷସ, ମୃଗ, ପକ୍ଷୀ ଓ କୀଟ ଆଦି ସମସ୍ତ ପ୍ରାଣୀଙ୍କ ପାଇଁ ଏହି କାମ ହେଉଛି ଦୁର୍ଜୟ । କାମ, କ୍ରୋଧ ଓ ଲୋଭ ହେତୁ ହିଁ ପ୍ରାଣୀମାନଙ୍କୁ ସର୍ବଦା ଜନ୍ମ ନେବାକୁ ପଡ଼ିଥାଏ । କାମ ହିଁ ସଂସାର-ବନ୍ଧନର କାରଣ । କାମରହିତ ପୁରୁଷ ମିଳିବା କଷ୍ଟକର । ଏହି ଅଦ୍ରୋହକ ସମସ୍ତଙ୍କୁ ଜିତି ଯାଇଛନ୍ତି; ସେ ଚଉଦଭୁବନ ଉପରେ ବିଜୟ ଲାଭ କରିଛନ୍ତି । ଏପରି ଲୋକଙ୍କୁ ସ୍ପର୍ଶ ଓ ଦର୍ଶନ କରି ମନୁଷ୍ୟ

ସବୁପାପରୁ ମୁକ୍ତ ହୋଇଯାଏ ଓ ନିଷ୍ପାପ ହୋଇ ଅକ୍ଷୟ ସ୍ୱର୍ଗ ପ୍ରାପ୍ତ କରେ ।''

ଏପରି କହି ଦେବତାମାନେ ବିମାନରେ ବସି ଆନନ୍ଦରେ ସ୍ୱର୍ଗଲୋକକୁ ଚାଲିଗଲେ । ଲୋକେ ମଧ୍ୟ ସନ୍ତୁଷ୍ଟ ହୋଇ ନିଜ ନିଜ ସ୍ଥାନକୁ ଚାଲିଗଲେ ତଥା ସେହି ଦମ୍ପତି ନିଜ ଘରକୁ ଚାଲିଗଲେ । ସେହିଦିନ ଠାରୁ ଅଦ୍ରୋହକଙ୍କୁ ଦିବ୍ୟଦୃଷ୍ଟି ପ୍ରାପ୍ତ ହୋଇଯାଇଛି । ସେ ଦେବତାମାନଙ୍କୁ ମଧ୍ୟ ଦେଖିପାରନ୍ତି ଓ ତିନିଲୋକର କଥା ଅନାୟାସରେ ଜାଣିପାରନ୍ତି ।

**ବ୍ୟାସଦେବ କହିଲେ**– ତାପରେ ଅଦ୍ରୋହକଙ୍କ ଗଳିକୁ ଯାଇ ବ୍ରାହ୍ମଣ ତାଙ୍କୁ ଦର୍ଶନ କଲେ ଓ ବଡ଼ ପ୍ରସନ୍ନତାର ସହିତ ତାଙ୍କୁ ଧର୍ମମୟ ଉପଦେଶ ତଥା ହିତକଥା ପଚାରିଲେ ।

**ସଜ୍ଜନାଦ୍ରୋହକ କହିଲେ**, ''ହେ ଧର୍ମଜ୍ଞ ବ୍ରାହ୍ମଣ ! ଆପଣ ପୁରୁଷମାନଙ୍କ ମଧ୍ୟରେ ଶ୍ରେଷ୍ଠ ବୈଷ୍ଣବଙ୍କ ପାଖକୁ ଯାଆନ୍ତୁ । ତାଙ୍କୁ ଦର୍ଶନ କଲେ ଆପଣଙ୍କର ମନୋରଥ ପୂର୍ଣ୍ଣ ହେବ । ବକର ମୃତ୍ୟୁ ତଥା ଆକାଶରେ ବସ୍ତ୍ର ନ ଶୁଖିବାର ରହସ୍ୟ ମଧ୍ୟ ଜଣା ପଡ଼ିଯିବ । ତା'ଛଡ଼ା ଆପଣଙ୍କ ହୃଦୟରେ ଅନ୍ୟ ଯେଉଁସବୁ କାମନା ରହିଛି, ସେସବୁ ବି ପୂରଣ ହୋଇଯିବ ।''

ତାହା ଶୁଣି ସେହି ବ୍ରାହ୍ମଣ ବିପ୍ରବେଶୀ ଭଗବାନଙ୍କ ସହିତ ଆନନ୍ଦରେ ବୈଷ୍ଣବଙ୍କ ପାଖକୁ ଆସିଲେ । ସେଠାରେ ପହଞ୍ଚି ସେ ସମ୍ମୁଖରେ ବସିଥିବା ଶୁଦ୍ଧହୃଦୟବାନ୍ ଜଣେ ତେଜସ୍ୱୀ ପୁରୁଷଙ୍କୁ ଦେଖିଲେ । ସେ ଥିଲେ ସମସ୍ତ ଶୁଦ୍ଧଲକ୍ଷଣସମ୍ପନ୍ନ ଏବଂ ନିଜ ତେଜରେ ଉଦୀୟମାନ । ଧର୍ମାତ୍ମା **ବ୍ରାହ୍ମଣ ସେହି ଧ୍ୟାନମଗ୍ନ ହରିଭକ୍ତଙ୍କୁ କହିଲେ**, ''ହେ ମହାତ୍ମନ୍ ! ମୁଁ ବହୁ ଦୂରରୁ ଆପଣଙ୍କ ପାଖକୁ ଆସିଛି । ମୋ ପାଇଁ ଯେଉଁ କର୍ତ୍ତବ୍ୟ ପ୍ରଯୁଜ୍ୟ, ତାହା ଉପଦେଶ କରନ୍ତୁ ।''

**ବୈଷ୍ଣବ କହିଲେ**, ''ଦେବତାମାନଙ୍କ ମଧ୍ୟରେ ଶ୍ରେଷ୍ଠ ଭଗବାନ୍ ଶ୍ରୀବିଷ୍ଣୁ ତୁମ ଉପରେ ପ୍ରସନ୍ନ । ତୁମକୁ ଦେଖି ମୋର ମନ ଉଲ୍ଲସିତ ହେଉଛି । ଏଣୁ ତୁମକୁ ଅନୁପମ କଲ୍ୟାଣ ପ୍ରାପ୍ତି ହେବ । ଆଜି ତୁମର ମନୋରଥ ସଫଳ ହେବ । ମୋ ଘରେ ଭଗବାନ୍ ଶ୍ରୀବିଷ୍ଣୁ ବିରାଜମାନ ହୋଇଛନ୍ତି ।''

ବୈଷ୍ଣବ ଏପରି କହିବା ପରେ **ବ୍ରାହ୍ମଣ ତାଙ୍କୁ କହିଲେ,** ‘‘ଭଗବାନ୍ ଶ୍ରୀବିଷ୍ଣୁ କେଉଁଠି ? କୃପା କରି ମୋତେ ତାଙ୍କର ଦର୍ଶନ କରାନ୍ତୁ ।’’

**ବୈଷ୍ଣବ କହିଲେ,** ‘‘ଏହି ସୁନ୍ଦର ଦେବାଳୟକୁ ଯାଇ ତୁମେ ପରମେଶ୍ୱରଙ୍କୁ ଦର୍ଶନ କର । ପ୍ରଭୁଙ୍କୁ ଦର୍ଶନ କଲେ ତୁମକୁ ଜନ୍ମ ଓ ମୃତ୍ୟୁ– ବନ୍ଧନରେ ବାନ୍ଧୁଥିବା ଘୋର ପାପରୁ ମୁକ୍ତି ମିଳିଯିବ ।’’

ତାଙ୍କ କଥା ଶୁଣି ବ୍ରାହ୍ମଣ ଦେବମନ୍ଦିରକୁ ଯାଇ ଦେଖିଲେ, ସେହି ବିଶ୍ୱରୂପଧାରୀ ଭଗବାନ୍ କମଳାସନରେ ବିରାଜମାନ ହୋଇଛନ୍ତି । **ବ୍ରାହ୍ମଣ** ମୁଣ୍ଡ ନୁଆଇଁ ତାଙ୍କୁ ପ୍ରଣାମ କଲେ ଓ ବଡ଼ ପ୍ରସନ୍ନତାର ସହିତ ତାଙ୍କ ଦୁଇପାଦ ଧରି **କହିଲେ,** ‘‘ହେ ଦେବେଶ୍ୱର ! ମୋ ଉପରେ ପ୍ରସନ୍ନ ହୁଅନ୍ତୁ । ମୁଁ ପ୍ରଥମେ ଆପଣଙ୍କୁ ଚିହ୍ନି ନ ଥିଲି । ହେ ପ୍ରଭୋ ! ଇହଲୋକ ଓ ପରଲୋକରେ ମଧ୍ୟ ମୁଁ ଯେପରି ଆପଣଙ୍କ କିଙ୍କର ହୋଇ ରହେ । ହେ ମଧୁସୂଦନ ! ମୋ ଉପରେ ଆପଣଙ୍କର ପ୍ରତ୍ୟକ୍ଷ ଅନୁଗ୍ରହ ରହିଛି । ଯଦି ମୋ ଉପରେ କୃପା ହୁଏ, ତାହେଲେ ମୁଁ ଆପଣଙ୍କର ସାକ୍ଷାତ୍ ସ୍ୱରୂପ ଦେଖିବାକୁ ଚାହୁଁଛି ।’’

**ଭଗବାନ୍ ଶ୍ରୀବିଷ୍ଣୁ କହିଲେ,** ‘‘ହେ ଭୂଦେବ ! ତୁମ ଉପରେ ମୋର ପ୍ରେମ ସର୍ବଦା ରହିଛି । ମୁଁ ସ୍ନେହବଶତଃ ତୁମକୁ ପୁଣ୍ୟାତ୍ମା ମହାପୁରୁଷମାନଙ୍କର ଦର୍ଶନ କରାଇଛି । ପୁଣ୍ୟବାନ୍ ମହାତ୍ମାମାନଙ୍କର ଥରେମାତ୍ର ଦର୍ଶନ, ସ୍ପର୍ଶ, ଧ୍ୟାନ ଏବଂ ନାମ ଉଚ୍ଚାରଣ କରିଦେଲେ ତଥା ସେମାନଙ୍କ ସହିତ ବାର୍ତ୍ତାଳାପ କଲେ, ମନୁଷ୍ୟ ଅକ୍ଷୟ ସ୍ୱର୍ଗସୁଖ ଭୋଗ କରେ । ମହାପୁରୁଷମାନଙ୍କର ନିତ୍ୟସଙ୍ଗ କଲେ ସବୁପାପ ନାଶ ହୋଇଯାଏ । *

ଯେଉଁ ମନୁଷ୍ୟ ପୁଣ୍ୟତୀର୍ଥମାନଙ୍କରେ ସ୍ନାନ କରି ଶଙ୍କର ତଥା ପୁଣ୍ୟାତ୍ମା ପୁରୁଷମାନଙ୍କର ଆଶ୍ରମ ଦର୍ଶନ କରନ୍ତି, ସେ ମୋ ଶରୀରରେ ଲୀନ ହୋଇଯାନ୍ତି ।

ଏକାଦଶୀ ତିଥିରେ – ଯାହା ମୋର ହିଁ ଦିନ (ହରିବାସର) –

* ଦର୍ଶନାତ୍ ସ୍ପର୍ଶନାଦ୍ଧ୍ୟାନାତ୍କୀର୍ତନାଭାଷଣାତ୍ତଥା । ସକୃତ୍ ପୁଣ୍ୟବତାମେବ ସ୍ୱର୍ଗଂ ଚାକ୍ଷୟମଶ୍ନୁତେ ॥
ନିତ୍ୟମେବ ତୁ ସଂସର୍ଗାତ୍ ସର୍ବପାପକ୍ଷୟୋ ଭବେତ୍ । ଭୁକ୍ତ୍ୱା ସୁଖମନନ୍ତଂ ଚ ମଦ୍ ଦେହେ ପ୍ରବିଲୀୟତେ ॥
(ପଦ୍ମ ପୁ., ସୃଷ୍ଟି ଖ.୪୭/୧୬୨-୬୩)

ଉପବାସ କରି ଯେ ଲୋକମାନଙ୍କୁ ପୁଣ୍ୟମୟୀ କଥା କହନ୍ତି, ସେ ବି ମୋ ସ୍ୱରୂପରେ ଲୀନ ହୋଇଯାନ୍ତି । ମୋ ଚରିତ ଶ୍ରବଣ କରି ଯେ ରାତିରେ ଅନିଦ୍ରା ରହେ, ସେ ମୋ ଦେହରେ ଲୀନ ହୋଇଯାଏ । ଯାହାଙ୍କର ମନ ତପସ୍ୱୀ, ରାଜା ଓ ଗୁରୁଜନମାନଙ୍କ ସହିତ କେବେ ଦ୍ରୋହ କରେ ନାହିଁ, ସେ ବି ମୋ ସ୍ୱରୂପରେ  ଲୀନ ହୋଇଯାଏ । ତୁମେ ହେଉଛ ମୋର ଭକ୍ତ ଓ ତୀର୍ଥସ୍ୱରୂପ; କିନ୍ତୁ ତୁମେ ବଗକୁ ଯେଉଁ ଶାପ ଦେଇଦେଲ, ସେହି ଦୋଷରୁ ମୁକ୍ତି ଦେବାପାଇଁ ମୁଁ ହିଁ ସେଠାରେ ଉପସ୍ଥିତ ହୋଇ କହିଥିଲି, ''ତୁମେ ପୁଣ୍ୟବାନମାନଙ୍କ ମଧ୍ୟରେ ଶ୍ରେଷ୍ଠ ଓ ତୀର୍ଥସ୍ୱରୂପ ମହାତ୍ମା ମୂକ ଚଣ୍ଡାଳଙ୍କ ପାଖକୁ ଯାଅ ।'' ହେ ଦ୍ୱିଜ ! ସେହି ପୁଣ୍ୟାତ୍ମାଙ୍କୁ ଦର୍ଶନ କରି ସେ କିପରି ନିଜ ମାତା-ପିତାଙ୍କ ସେବାପୂଜା କରୁଥିଲା, ତୁମେ ତାହା ଦେଖିଥିଲ । ସେହିସବୁ ମହାତ୍ମାମାନଙ୍କର ଦର୍ଶନରେ, ସେମାନଙ୍କ ସହିତ ବାର୍ତ୍ତାଳାପ କରିବାରେ ଓ ମୋ ସହିତ ସଂପର୍କ ହେବା ଫଳରେ ଆଜି ତୁମେ ମୋ ମନ୍ଦିରକୁ ଆସିଛ । କୋଟିଏ ଜନ୍ମ ପରେ ଯାହାର ପାପ କ୍ଷୟ ହୁଏ, ସେହି ଧର୍ମଜ୍ଞ ପୁରୁଷ ମୋ ଦର୍ଶନ କରେ; ଏହାଦ୍ୱାରା ତାକୁ ପ୍ରସନ୍ନତା ପ୍ରାପ୍ତ ହୁଏ । ହେ ବତ୍ସ ! ମୋ ଅନୁଗ୍ରହରୁ ହିଁ ତୁମକୁ ମୋର ଦର୍ଶନ ମିଳିଛି । ତେଣୁ ତୁମର ଯାହା ଇଚ୍ଛା, ସେହି ବର ମାଗି ନିଅ ।''

**ବ୍ରାହ୍ମଣ କହିଲେ,** 'ହେ ନାଥ ! ମୋର ମନ ସର୍ବଦା ଆପଣଙ୍କ ଧ୍ୟାନରେ ସ୍ଥିର ରହୁ, ସମସ୍ତ ଲୋକମାନଙ୍କର ସ୍ୱାମୀ ହେ ମାଧବ ! ଆପଣଙ୍କ ବ୍ୟତୀତ ଅନ୍ୟ କୌଣସି ବସ୍ତୁ ମୋତେ କେବେ ପ୍ରିୟ ନ ଲାଗୁ ।'

**ଶ୍ରୀଭଗବାନ୍ କହିଲେ,** ''ହେ ନିଷ୍ପାପ ବ୍ରାହ୍ମଣ ! ତୁମ ବୁଦ୍ଧିରେ ସର୍ବଦା ଏପରି ଉତ୍ତମ ବିଗ୍ରହ ରହିଛି ; ତେଣୁ ତୁମେ ମୋ ଧାମକୁ ଆସି ମୋ ପରି ଦିବ୍ୟସୁଖ ଉପଭୋଗ କରିବ ; କିନ୍ତୁ ତୁମର ମାତା-ପିତା ତୁମଠାରୁ ଆଦର ପାଉନାହାଁନ୍ତି ; ଏଣୁ ପ୍ରଥମେ ମାତା-ପିତାଙ୍କ ପୂଜା କର, ତା'ପରେ ମୋ ସ୍ୱରୂପ ପ୍ରାପ୍ତ ହୋଇପାରିବ । ସେମାନଙ୍କର ଦୁଃଖପୂର୍ଣ୍ଣ ଉଚ୍ଛ୍ୱାସ ଓ କ୍ରୋଧ ହେତୁ ତୁମ ତପସ୍ୟା ପ୍ରତିଦିନ ନଷ୍ଟ ହେଉଛି । ଯେଉଁ ପୁତ୍ର ଉପରେ ସର୍ବଦା ମାତା-ପିତାଙ୍କର କୋପ ରହେ, ତାକୁ ନରକରେ

ପଡ଼ିବାରୁ ମୁଁ, ବ୍ରହ୍ମା ଓ ମହାଦେବ ମଧ୍ୟ ରୋକିପାରିବେ ନାହିଁ ।* ତେଣୁ ତୁମେ ମାତା-ପିତାଙ୍କ ପାଖକୁ ଯାଅ ଓ ଯତ୍ନପୂର୍ବକ ସେମାନଙ୍କର ପୂଜା କର । ପୁଣି ତାଙ୍କରି କୃପାରୁ ତୁମେ ମୋତେ ପ୍ରାପ୍ତ ହେବ ।''

**ବ୍ୟାସଦେବ କହିଗ୍ଲିଲେ** – ଭଗବାନ୍ ଏପରି କହିବା ପରେ ବ୍ରାହ୍ମଣ ନରୋତ୍ତମ ପୁଣି ଥରେ କହିଲେ, 'ହେ ନାଥ ! ଯଦି ଆପଣ ମୋ ଉପରେ ପ୍ରସନ୍ନ, ତା'ହେଲେ ନିଜ ସ୍ୱରୂପ ଦର୍ଶନ କରାନ୍ତୁ ।' ସକଳ ଲୋକର ଏକମାତ୍ର କର୍ତ୍ତା ଏବଂ ବ୍ରାହ୍ମଣହିତୈଷୀ ଭଗବାନ୍ ନରୋତ୍ତମଙ୍କ ପ୍ରେମରେ ପ୍ରସନ୍ନ ହୋଇ ତାଙ୍କୁ ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ଧାରଣ କରି ନିଜ ପୁରୁଷୋତ୍ତମ ରୂପ ଦର୍ଶନ କରାଇଲେ । ତାଙ୍କ ତେଜରେ ସାରା ଜଗତ୍ ବ୍ୟାପ୍ତ ହେଉଥିଲା । ସେହି ବ୍ରାହ୍ମଣ ଭୂମି ଉପରେ ଦଣ୍ଡବତ୍ ପଡ଼ି ଭଗବାନଙ୍କୁ ପ୍ରଣାମ କଲେ ଓ କହିଲେ, ''ହେ ଜଗଦୀଶ୍ୱର ! ଆଜି ମୋର ଜନ୍ମ ସାର୍ଥକ ହୋଇଗଲା ; ଆଜି ମୋର ନେତ୍ର ପବିତ୍ର ହୋଇଗଲା । ବର୍ତ୍ତମାନ ମୋର ଦୁଇଟି ହାତ ପ୍ରଶସ୍ତ ହୋଇଯାଇଛି । ଆଜି ମୁଁ ଧନ୍ୟ ହୋଇଗଲି । ମୋର ପୂର୍ବଜମାନେ ସନାତନ ବ୍ରହ୍ମଲୋକକୁ ଯାଉଛନ୍ତି । ହେ ଜନାର୍ଦ୍ଦନ ! ଆଜି ଆପଣଙ୍କ କୃପାରୁ ମୋର ବନ୍ଧୁବାନ୍ଧବ ଆନନ୍ଦିତ ହେଉଛନ୍ତି, ଏବେ ମୋର ସବୁ ମନୋରଥ ପୂର୍ଣ୍ଣ ହୋଇଗଲା; କିନ୍ତୁ ହେ ନାଥ ! ମୂକ ଚ୍ଣ୍ଡାଳ ଆଦି ଜ୍ଞାନୀ ମହାତ୍ମାମାନଙ୍କ କଥା ଭାବି ମୁଁ ବଡ଼ ବିସ୍ମିତ ହେଉଛି । ସେମାନେ ଅନ୍ୟ ସ୍ଥାନରେ ଘଟିଥିବା ମୋର ବୃତ୍ତାନ୍ତ ଜାଣିଲେ କିପରି ? ମୂକ ଚ୍ଣ୍ଡାଳଘରେ ଆପଣ ଅତି ସୁନ୍ଦର ବ୍ରାହ୍ମଣରୂପ ଧରି ବିରାଜମାନ କରନ୍ତି ; ସେହିପରି ପତିବ୍ରତା ଘରେ, ତୁଳାଧାର ପାଖରେ, ଅଦ୍ରୋହକଙ୍କ ଘରେ ତଥା ଏହି ବୈଷ୍ଣବ ମହାତ୍ମାଙ୍କ ମନ୍ଦିରରେ ମଧ୍ୟ ଆପଣ ଦର୍ଶନ ଦେଉଛନ୍ତି । ଏସବୁ କଥାର ଯଥାର୍ଥ ରହସ୍ୟ କ'ଣ ? ଦୟା କରି କହନ୍ତୁ ।''

**ଶ୍ରୀଭଗବାନ୍ କହିଲେ,** ''ହେ ବିପ୍ରବର ! ମୂକ ଚ୍ଣ୍ଡାଳ ସର୍ବଦା ନିଜ ମାତା-ପିତାଙ୍କୁ ଭକ୍ତି କରନ୍ତି । ଶୁଭାଦେବୀ ପତିବ୍ରତା । ତୁଳାଧାର ସତ୍ୟବାଦୀ ଓ ସମସ୍ତଙ୍କ ପ୍ରତି ସମାନ ଭାବ ରଖନ୍ତି । ଅଦ୍ରୋହକ ଲୋଭ ଓ କାମକୁ

* ମନ୍ୟୁର୍ନପତିତେ ଯସ୍ମିନ୍ ପୁତ୍ରେ ପିତ୍ରୋଶ୍ଚ ନିତ୍ୟଶଃ । ତନ୍ନିରୟଂ ନ ବାଧେଽହଂ ନ ଧାତା ନ ଚ ଶଙ୍କରଃ ॥
(ପଦ୍ମ ପୁ., ସୃଷ୍ଟି ଖ.୪୭/୧୭୮)

ଜୟ କରିଛନ୍ତି ଏବଂ ବୈଷ୍ଣବ ମୋର ଅନନ୍ୟ ଭକ୍ତ । ଏହିସବୁ ସଦ୍‌ଗୁଣ ହେତୁ ମୁଁ ପ୍ରସନ୍ନ ହୋଇ ଏହି ସମସ୍ତଙ୍କ ଘରେ ଆନନ୍ଦରେ ବାସ କରେ । ମୋ ସହିତ ଲକ୍ଷ୍ମୀ ଓ ସରସ୍ୱତୀ ମଧ୍ୟ ଏହି ଲୋକମାନଙ୍କ ଘରେ ରହନ୍ତି । ମୂକ ଚଣ୍ଡାଳ ହେଉଛନ୍ତି ତ୍ରିଭୁବନରେ ସମସ୍ତଙ୍କର ମଙ୍ଗଳକାରୀ । ଚଣ୍ଡାଳ ହୋଇ ମଧ୍ୟ ସେ ସଦାଚାରରେ ଅଛନ୍ତି ; ଏଣୁ ଦେବତାମାନେ ତାଙ୍କୁ ବ୍ରାହ୍ମଣ ପରି ମାନନ୍ତି । ପୁଣ୍ୟକର୍ମା ମୂକ ଚଣ୍ଡାଳଙ୍କ ସମାନ ଏହି ସଂସାରରେ ଆଉ କେହି ନାହାନ୍ତି । ସେ ସଦା ମାତା-ପିତାଙ୍କ ସେବାରେ ଲାଗି ରହନ୍ତି । ସେ ନିଜର ଏହି ଶକ୍ତିବଳରେ ତିନି ଲୋକକୁ ଜୟ କରିଛନ୍ତି । ତାଙ୍କ ମାତୃପିତୃଭକ୍ତି ଦେଖି ମୁଁ ଅତ୍ୟନ୍ତ ସନ୍ତୁଷ୍ଟ ହୁଏ ଓ ତେଣୁ ତାଙ୍କ ଘରେ ସ୍ୱର୍ଗର ସବୁ ଦେବତାଙ୍କ ସହିତ ମୁଁ ବ୍ରାହ୍ମଣରୂପରେ ନିବାସ କରେ । ସେହିପରି ମୁଁ ସେହି ପତିବ୍ରତା, ତୁଳାଧାର, ଅଦ୍ରୋହକ ଓ ଏହି ବୈଷ୍ଣବ ଆଦିଙ୍କର ଘରେ ସର୍ବଦା ବାସ କରେ । ହେ ଧର୍ମଜ୍ଞ ! ମୁହୂର୍ତ୍ତକ ପାଇଁ ମଧ୍ୟ ମୁଁ ଏହି ଲୋକଙ୍କର ଘର ଛାଡ଼େ ନାହିଁ ; ଯେ ପୁଣ୍ୟାତ୍ମା, ସେ ହିଁ ପ୍ରତିଦିନ ମୋର ଦର୍ଶନ ପାଆନ୍ତି; ଅନ୍ୟ ପାପୀ ମନୁଷ୍ୟମାନେ ପାଆନ୍ତି ନାହିଁ । ତୁମେ ନିଜର ପୁଣ୍ୟବଳରେ ଓ ମୋ ଅନୁଗ୍ରହରୁ ମୋର ଦର୍ଶନ ଲାଭ କରିଛ । ବର୍ତ୍ତମାନ ମୁଁ ଜଣ ଜଣ କରି ସେହି ମହାତ୍ମାମାନଙ୍କ ସଦାଚାରର ବର୍ଣ୍ଣନା କରିବି; ତୁମେ ମନ ଦେଇ ଶୁଣ । ଏହି ବର୍ଣ୍ଣନା ଶୁଣି ମନୁଷ୍ୟ ଜନ୍ମମୃତ୍ୟୁ ବନ୍ଧନରୁ ସର୍ବଦା ମୁକ୍ତ ହୋଇଯାଏ । ଦେବତାମାନଙ୍କ ମଧ୍ୟରେ ବି ମାତାପିତାଙ୍କଠାରୁ ବଳି ଆଉ ତୀର୍ଥ ନାହିଁ । ଯେ ମାତାପିତାଙ୍କ ଆରାଧନା କରିଛନ୍ତି, ସେ ପୁରୁଷମାନଙ୍କ ମଧ୍ୟରେ ଶ୍ରେଷ୍ଠ; ସେ ମୋ ହୃଦୟରେ ରହନ୍ତି ଓ ମୁଁ ତାଙ୍କ ହୃଦୟରେ ରହେ ; ଆମ ଦୁଇଜଣଙ୍କ ଭିତରେ କୌଣସି ପ୍ରଭେଦ ରହେ ନାହିଁ । ଇହଲୋକ ଓ ପରଲୋକରେ ମଧ୍ୟ ସେ ମୋ ପରି ପୂଜ୍ୟ ହୁଅନ୍ତି । ସେ ନିଜର ସମସ୍ତ ବନ୍ଧୁବାନ୍ଧବଙ୍କ ସହିତ ମୋର ରମଣୀୟ ଧାମରେ ପହଞ୍ଚି ମୋଠାରେ ଲୀନ ହୋଇଯା'ନ୍ତି । ମାତାପିତାଙ୍କ ଆରାଧନା-ବଳରେ ହିଁ ସେହି ନରଶ୍ରେଷ୍ଠ ମୂକ ଚଣ୍ଡାଳ ତିନିଲୋକର କଥା ଜାଣନ୍ତି; ତେଣୁ ଏହି ବିଷୟରେ ତୁମେ ବିସ୍ମିତ କାହିଁକି ହେଉଛ ?"

**ବ୍ରାହ୍ମଣ ପଚାରିଲେ,** "ହେ ଜଗଦୀଶ୍ୱର ! ମୋହ ଓ ଅଜ୍ଞାନବଶତଃ

ପ୍ରଥମେ ମାତା-ପିତାଙ୍କ ଆରାଧନା ନ କରି, ଭଲମନ୍ଦର ଜ୍ଞାନ ହେବା ପରେ ଯଦି ମନୁଷ୍ୟ ପିତାମାତାଙ୍କ ସେବା କରିବାକୁ ଚାହେଁ, ତା'ହେଲେ ତା' ପାଇଁ କି କର୍ତ୍ତବ୍ୟ ଅଛି ?''

**ଶ୍ରୀ ଭଗବାନ୍ କହିଲେ,** ''ହେ ବିପ୍ରବର ! ଏକ ବର୍ଷ, ଏକ ମାସ, ଏକ ପକ୍ଷ, ଏକ ସପ୍ତାହ ଅଥବା ଏକ ଦିନ ମଧ୍ୟ ଯେ ମାତାପିତାଙ୍କୁ ଭକ୍ତି କରେ, ସେ ମୋ ଧାମ ପ୍ରାପ୍ତ ହୁଏ ।* କିନ୍ତୁ ଯେ ସେମାନଙ୍କ ମନରେ କଷ୍ଟ ଦିଏ, ସେ ନିଶ୍ଚିତରୂପେ ନରକରେ ପଡ଼େ । ଯେ ପ୍ରଥମେ ନିଜ ମାତାପିତାଙ୍କ ସେବା ଅଳ୍ପ କରିଥାଏ ବା କରି ନ ଥାଏ, ସେ ଯଦି ପିତାମାତାଙ୍କ ମୃତ୍ୟୁ ପରେ ବୃଷଭ ଦାନ କରେ, ତାହେଲେ ତାକୁ ପିତୃଭକ୍ତିର ଫଳ ମିଳିଯାଏ । ଯେଉଁ ବୁଦ୍ଧିମାନ୍ ପୁତ୍ର ନିଜର ସର୍ବସ୍ୱ ଲଗାଇ ମାତାପିତାଙ୍କର ଶ୍ରାଦ୍ଧ କରେ, ସେ ଜାତିସ୍ମର (ପୂର୍ବଜନ୍ମମାନଙ୍କ କଥା ସ୍ମରଣକାରୀ) ହୋଇଥାଏ ଓ ତାକୁ ପିତୃଭକ୍ତିର ସମସ୍ତ ଫଳ ମିଳିଯାଏ । ତିନିଲୋକରେ ଶ୍ରାଦ୍ଧଠାରୁ ବଳି ମହାନ୍ ଯଜ୍ଞ ଅନ୍ୟ କିଛି ନାହିଁ । ଏଥିରେ ଯାହା କିଛି ଦାନ କରାଯାଏ, ତାହାର ଫଳ ଦଶହଜାର ଗୁଣ ହୋଇଯାଏ । ନିଜ ଜାତିଲୋକଙ୍କୁ ଦେଲେ ଲକ୍ଷେ ଗୁଣ, ପିଣ୍ଡଦାନରେ ଲାଗିଥିବା ଧନ କୋଟିଏ ଗୁଣ ଓ ବ୍ରାହ୍ମଣଙ୍କୁ ଦେଲେ ତାହା ଅନନ୍ତଗୁଣ ଫଳଦାନକାରୀ ହୁଏ ବୋଲି କୁହାଯାଇଛି । ଯେ ଗଙ୍ଗାଙ୍କ ଜଳରେ ଓ ଗୟା, ପ୍ରୟାଗ, ପୁଷ୍କର, କାଶୀ, ସିଦ୍ଧକୁଣ୍ଡ ତଥା ଗଙ୍ଗାସାଗର-ସଙ୍ଗମ ତୀର୍ଥରେ ପିତୃପୁରୁଷଙ୍କ ପାଇଁ ଅନ୍ନ ଦାନ କରେ, ତାହାର ମୁକ୍ତି ନିଶ୍ଚିତ ହୋଇଯାଏ ଏବଂ ତାହାର ପିତୃପୁରୁଷ ଅକ୍ଷୟ ସ୍ୱର୍ଗ ପ୍ରାପ୍ତ କରନ୍ତି । ତାହାର ଜନ୍ମ ସଫଳ ହୋଇଯାଏ । ଯେ ବିଶେଷତଃ ଗଙ୍ଗାରେ ତିଳମିଶ୍ରିତ ଜଳଦ୍ୱାରା ତର୍ପଣ କରେ, ତା ପାଇଁ ବା କହିବା କ'ଣ ! ଅମାବାସ୍ୟା ଓ ଯୁଗାଦି ତିଥିମାନଙ୍କରେ ତଥା ଚନ୍ଦ୍ରଗ୍ରହଣ ଓ ସୂର୍ଯ୍ୟପରାଗ ଦିନ ଯେ ପାର୍ବଣ ଶ୍ରାଦ୍ଧ କରେ, ସେ ଅକ୍ଷୟଲୋକର ଭାଗୀ ହୁଏ । ତାହାର ପିତୃପୁରୁଷ ତାକୁ ଅଶେଷ ଆଶୀର୍ବାଦ ଓ ଅନନ୍ତ ଭୋଗ ପ୍ରଦାନ କରି ଦଶହଜାର ବର୍ଷ ପର୍ଯ୍ୟନ୍ତ ତୃପ୍ତ ରହନ୍ତି । ଏଥିପାଇଁ ପ୍ରତ୍ୟେକ

* ଦିନୈକଂ ମାସପକ୍ଷଂ ବା ପକ୍ଷାର୍ଦ୍ଧଂ ବାପି ବତ୍ସରମ୍ । ପିତ୍ରୋର୍ଭକ୍ତିଃ କୃତା ଯେନ ସ ଚ ଗଚ୍ଛେନ୍ମମାଳୟମ୍ ॥
(ପଦ୍ମ ପୁ., ସୃଷ୍ଟି ଖ.୪୭/୨୦୮)

ପର୍ବରେ ପୁତ୍ରମାନେ ପ୍ରସନ୍ନତାର ସହିତ ପାର୍ବଣ ଶ୍ରାଦ୍ଧ କରିବା ଉଚିତ । ମାତାପିତାଙ୍କର ଏହି ଶ୍ରାଦ୍ଧ-ଯଜ୍ଞ ଅନୁଷ୍ଠାନ କରି ମନୁଷ୍ୟ ସବୁପ୍ରକାର ବନ୍ଧନରୁ ମୁକ୍ତ ହୋଇଯାଏ ।

"ଯେଉଁ ଶ୍ରାଦ୍ଧ ପ୍ରତିଦିନ କରାଯାଏ, ତାକୁ ନିତ୍ୟଶ୍ରାଦ୍ଧ ବୋଲି ସ୍ୱୀକାର କରାଯାଇଛି । ଯେଉଁ ପୁରୁଷ ଶ୍ରଦ୍ଧାପୂର୍ବକ ନିତ୍ୟଶ୍ରାଦ୍ଧ କରେ, ସେ ଅକ୍ଷୟଲୋକ ଉପଭୋଗ କରେ । ଏହିପରି କୃଷ୍ଣପକ୍ଷରେ ବିଧିପୂର୍ବକ କାମ୍ୟଶ୍ରାଦ୍ଧ ଅନୁଷ୍ଠାନ କରି ମଧ୍ୟ ମନୁଷ୍ୟ ମନୋବାଞ୍ଛିତ ଫଳ ପାଏ । ଆଷାଢ଼ ପୂର୍ଣ୍ଣିମା ପରେ ଯେଉଁ ପଞ୍ଚମ ପକ୍ଷ ଆସେ (ଯାହାକୁ ମହାଳୟା ବା ପିତୃପକ୍ଷ କହନ୍ତି) ସେଥିରେ ପିତୃପୁରୁଷଙ୍କୁ ଶ୍ରାଦ୍ଧ ଦେବା ଉଚିତ । ସେହି ସମୟରେ ସୂର୍ଯ୍ୟ କନ୍ୟାରାଶିରେ ରହନ୍ତି କି ନାହିଁ, ତାହା ବିଗ୍ଚର କରିବା ଉଚିତ ନୁହେଁ । ଯେତେବେଳେ ସୂର୍ଯ୍ୟ କନ୍ୟାରାଶିରେ ରହନ୍ତି, ସେହି ସମୟରୁ ଆରମ୍ଭ କରି ଷୋହଳ ଦିନ ପର୍ଯ୍ୟନ୍ତ ଉତ୍ତମ ଦକ୍ଷିଣା ଦେଇ ସମ୍ପନ୍ନ କରାଯାଇଥିବା ଶ୍ରାଦ୍ଧ ଯଜ୍ଞ ସମାନ ମହତ୍ତ୍ୱପୂର୍ଣ୍ଣ ଅଟେ । ସେହି ଦିନମାନଙ୍କରେ ଏହି ପରମ ପବିତ୍ର କାମ୍ୟଶ୍ରାଦ୍ଧ କରିବା ଉଚିତ । ଏଥିରେ ଶ୍ରାଦ୍ଧକର୍ତ୍ତାର ମଙ୍ଗଳ ହୁଏ । ଯଦି ସେତେବେଳେ ଶ୍ରାଦ୍ଧ ହୋଇପାରେ ନାହିଁ, ତା'ହେଲେ ଯେବେ ସୂର୍ଯ୍ୟ ତୁଳାରାଶିରେ ରହନ୍ତି, ସେତେବେଳେ କୃଷ୍ଣପକ୍ଷ ଆଦିରେ ଉକ୍ତ ଶ୍ରାଦ୍ଧ କରିବା ଉଚିତ ।

"ଚନ୍ଦ୍ରଗ୍ରହଣ ସମୟରେ କରାଯାଉଥିବା ସମସ୍ତ ଦାନ ଭୂମିଦାନ ସହିତ ସମାନ ଓ ସମସ୍ତ ବ୍ରାହ୍ମଣ ବ୍ୟାସଙ୍କ ସହିତ ସମାନ ବୋଲି ସ୍ୱୀକାର କରାଯାଏ; ସେତେବେଳେ ସମସ୍ତ ଜଳ ଗଙ୍ଗାଜଳ ତୁଲ୍ୟ ହୋଇଯାଏ । ଚନ୍ଦ୍ରଗ୍ରହଣରେ ଦିଆଯାଇଥିବା ଦାନ ଅନ୍ୟ ସମୟର ଦାନ ଅପେକ୍ଷା ଲକ୍ଷେଗୁଣ ତଥା ସୂର୍ଯ୍ୟପରାଗରେ ତାହା ଦଶଲକ୍ଷଗୁଣ ଅଧିକ ଫଳ ପ୍ରଦାନକାରୀ ବୋଲି କୁହାଯାଇଛି । ଯଦି ଗଙ୍ଗାଜଳ ମିଳିଯାଏ, ତେବେ ତ ଚନ୍ଦ୍ରଗ୍ରହଣରେ ଦାନ କୋଟିଏ ଗୁଣ ଓ ସୂର୍ଯ୍ୟୋପରାଗରେ ଦାନ ଦଶକୋଟି ଗୁଣ ଅଧିକ ଫଳଦାନକାରୀ ହୋଇଯାଏ । ବିଧିପୂର୍ବକ ଏକଲକ୍ଷ ଗୋଦାନ କଲେ ଯେଉଁ ଫଳ ମିଳେ, ତାହା ଚନ୍ଦ୍ରଗ୍ରହଣ ସମୟରେ ଗଙ୍ଗାରେ ସ୍ନାନ କଲେ ମିଳିଯାଏ । ଯେ ଚନ୍ଦ୍ରଗ୍ରହଣ ଓ ସୂର୍ଯ୍ୟପରାଗରେ ଗଙ୍ଗାରେ ବୁଡ଼ ପକାଏ, ତାକୁ ସମସ୍ତ

ତୀର୍ଥରେ ସ୍ନାନ କରିବାର ଫଳ ମିଳିଯାଏ । ଯଦି ରବିବାରରେ ସୂର୍ଯ୍ୟପରାଗ ଓ ସୋମବାରରେ ଚନ୍ଦ୍ରଗ୍ରହଣ ହୁଏ, ତେବେ ତାକୁ ଚୂଡ଼ାମଣି ଯୋଗ କୁହାଯାଏ ; ସେହି ସମୟରେ ସ୍ନାନ ଓ ଦାନର ଅନନ୍ତ ଫଳ ମିଳେ ବୋଲି ସ୍ୱୀକାର କରାଯାଇଛି । ସେହି ସମୟରେ ପୁଣ୍ୟତୀର୍ଥରେ ଉପବାସ କରି ଯେଉଁ ପୁରୁଷ ପିଣ୍ଡ ଦାନ, ତର୍ପଣ ତଥା ଧନଦାନ କରେ, ସେ ସତ୍ୟଲୋକରେ ପ୍ରତିଷ୍ଠିତ ହୁଏ ।''

**ବ୍ରାହ୍ମଣ ପଚ୍ଚାରିଲେ**—''ହେ ଦେବ ! ଆପଣ ପିତାଙ୍କ ପାଇଁ କରାଯାଉଥିବା ଶ୍ରାଦ୍ଧ ନାମକ ମହାଯଜ୍ଞର ବର୍ଣ୍ଣନା କଲେ । ଏଥର ପୁତ୍ର ପିତାଙ୍କ ଜୀବିତାବସ୍ଥାରେ କଣ କରିବା ଉଚିତ, ତାହା କହନ୍ତୁ । କେଉଁ କର୍ମ କରି ବୁଦ୍ଧିମାନ୍ ପୁତ୍ରକୁ ଜନ୍ମ ଜନ୍ମାନ୍ତରରେ ଶ୍ରେଷ୍ଠ କଲ୍ୟାଣ ପ୍ରାପ୍ତି ହୋଇପାରିବ, ତାହା ଯତ୍ନପୂର୍ବକ କହିବାର କୃପା କରନ୍ତୁ ।''

**ଶ୍ରୀଭଗବାନ୍ କହିଲେ,** ''ହେ ବିପ୍ରବର ! ପିତାଙ୍କୁ ଦେବତା ଭଳି ମନେ କରି ତାଙ୍କୁ ପୂଜା କରିବା ଉଚିତ ଓ ତାଙ୍କୁ ପୁତ୍ର ପରି ସ୍ନେହ କରିବା ଉଚିତ । ମନରେ ବି ପିତାଙ୍କ ଆଜ୍ଞା ଉଲ୍ଲଘଂନ କରିବା କଦାପି ଉଚିତ ନୁହେଁ । ଯେଉଁ ପୁତ୍ର ରୋଗୀପିତାର ଭଲଭାବରେ ପରିଚର୍ଯ୍ୟା କରେ, ତାକୁ ଅକ୍ଷୟ ସ୍ୱର୍ଗପ୍ରାପ୍ତ ହୁଏ ଓ ସେ ସର୍ବଦା ଦେବତାମାନଙ୍କ ଦ୍ୱାରା ପୂଜିତ ହୁଏ । ପିତା ଯେତେବେଳେ ମରଣାପନ୍ନ ହୋଇଯାଆନ୍ତି, ମୃତ୍ୟୁର ଲକ୍ଷଣ ଦେଖାଯାଏ, ସେତେବେଳେ ମଧ୍ୟ ତାଙ୍କୁ ପୂଜା କରି ପୁତ୍ର ଦେବତାମାନଙ୍କ ସମାନ ହୋଇଯାଏ । ପିତାଙ୍କ ସଦ୍‌ଗତି ପାଇଁ ବିଧିପୂର୍ବକ ଉପବାସ କରିବା ଦ୍ୱାରା ଯେଉଁ ଲାଭ ହୁଏ, ତାହା ବର୍ଣ୍ଣନା କରୁଛି, ଶୁଣ । ହଜାରେ ଅଶ୍ୱମେଧ ଓ ଶହେ ରାଜସୂୟ ଯଜ୍ଞ କଲେ ଯେଉଁ ପୁଣ୍ୟ ହୁଏ, ପିତାଙ୍କ ନିମିତ୍ତ ଉପବାସ କଲେ ସେହି ପୁଣ୍ୟ ପ୍ରାପ୍ତ ହୁଏ । ସେହି ଉପବାସ ଯଦି ତୀର୍ଥରେ କରାଯାଏ, ତେବେ ସେହି ଦୁଇଯଜ୍ଞଠାରୁ କୋଟିଏ ଗୁଣ ଅଧିକ ଫଳ ମିଳେ । ଯେଉଁ ଶ୍ରେଷ୍ଠ ପୁରୁଷର ପ୍ରାଣ ଗଙ୍ଗାଜଳରେ ଯାଏ, ସେ ଆଉ ମା'ଦୁଧ ପାନ କରେ ନାହିଁ (ପୁନର୍ଜନ୍ମ ପାଏ ନାହିଁ); ବରଂ ମୁକ୍ତ ହୋଇଯାଏ । ଯେ ନିଜ ଇଚ୍ଛାନୁସାରେ କାଶୀରେ ରହି ପ୍ରାଣତ୍ୟାଗ କରେ,

ସେ ମନୋବାଞ୍ଛିତ ଫଳଭୋଗ କରି ମୋ ସ୍ୱରୂପରେ ଲୀନ ହୋଇଯାଏ ।* ଯୋଗଯୁକ୍ତ ନୈଷ୍ଠିକ ବ୍ରହ୍ମଚାରୀ ଓ ମୁନିମାନଙ୍କୁ ଯେଉଁ ଗତି ପ୍ରାପ୍ତ ହୁଏ, ବ୍ରହ୍ମପୁତ୍ର ନଦୀର ସାତଧାରାମାନଙ୍କରେ ପ୍ରାଣତ୍ୟାଗକାରୀକୁ ସେହି ଗତି ମିଳେ । ବିଶେଷତଃ (ଅନ୍ତକାଳରେ) ଯେ ସୋନ ନଦୀର ଉତ୍ତର ତଟରେ ଆଶ୍ରୟ ନେଇ ବିଧିପୂର୍ବକ ପ୍ରାଣତ୍ୟାଗ କରେ, ସେ ମୋ ସମାନ ସ୍ଥାନ ପ୍ରାପ୍ତ ହୁଏ । ଯେଉଁ ମନୁଷ୍ୟର ମୃତ୍ୟୁ ଘର ଭିତରେ ହୁଏ, ସେହି ଘର ଛପରରେ ଯେତେଟି ଗଣ୍ଠି ବନ୍ଧା ହୋଇଥାଏ, ତା ଶରୀରରେ ମଧ୍ୟ ସେତେଟି ବନ୍ଧନ ବାନ୍ଧି ହୋଇଯାଏ । ଏକ-ଏକ ବର୍ଷ ପରେ ତାର ଗୋଟିଏ ଗୋଟିଏ ବନ୍ଧନ ଖୋଲେ । ପୁତ୍ର ଓ ଭାଇବନ୍ଧୁ ତାହା ଦେଖି ରହିଯା'ନ୍ତି ; କାହାରି ଦ୍ୱାରା ତାକୁ ସେହି ବନ୍ଧନରୁ ମୁକ୍ତି ମିଳେ ନାହିଁ । ପର୍ବତ, ଅରଣ୍ୟ, ଦୁର୍ଗମ ସ୍ଥାନ ବା ଜଳଶୂନ୍ୟ ସ୍ଥାନରେ ପ୍ରାଣତ୍ୟାଗ କଲେ ମନୁଷ୍ୟ ଦୁର୍ଗତି ପ୍ରାପ୍ତ ହୁଏ । ତାକୁ କୀଟପତଙ୍ଗ ଯୋନିରେ ଜନ୍ମ ନେବାକୁ ପଡ଼େ । ଯେଉଁ ମରିଯାଇଥିବା ବ୍ୟକ୍ତିର ଶବଦାହ-ସଂସ୍କାର ମୃତ୍ୟୁର ଦ୍ୱିତୀୟ ଦିନ ହୁଏ, ସେ ଷାଠିଏ ହଜାର ବର୍ଷ ପର୍ଯ୍ୟନ୍ତ କୁମ୍ଭୀପାକ ନରକରେ ପଡ଼ିରହେ । ଯେଉଁ ମନୁଷ୍ୟ ଅସ୍ପୃଶ୍ୟକୁ ସ୍ପର୍ଶ କରି ବା ପତିତାବସ୍ଥାରେ ରହି ପ୍ରାଣତ୍ୟାଗ କରେ, ସେ ଚିରକାଳ ପର୍ଯ୍ୟନ୍ତ ନରକରେ ନିବାସ କରି ମ୍ଳେଚ୍ଛଯୋନିରେ ଜନ୍ମ ନିଏ । ପୁଣ୍ୟ କରିଥିବା ବା ପୁଣ୍ୟକର୍ମ ଅନୁଷ୍ଠାନ କରିଥିବା ମନୁଷ୍ୟଙ୍କର ମୃତ୍ୟୁ ସମୟରେ ଯେପରି ବୁଦ୍ଧି ହୁଏ, ତାଙ୍କୁ ସେହିପରି ଗତି ପ୍ରାପ୍ତ ହୁଏ ।

"ପିତାଙ୍କ ମୃତ୍ୟୁ ପରେ ଯେଉଁ ବଳବାନ୍ ପୁତ୍ର ତାଙ୍କର ଶବକୁ କାନ୍ଧରେ ବୋହିନିଏ, ତାକୁ ପଦେ ପଦେ ଅଶ୍ୱମେଧ ଯଜ୍ଞର ଫଳ ମିଳେ । ପୁତ୍ର ପିତାଙ୍କ ଶବକୁ ଚିତା ଉପରେ ରଖି, ବିଧିପୂର୍ବକ ମନ୍ତ୍ରୋଚ୍ଚାରଣ କରି ପ୍ରଥମେ ତାଙ୍କୁ ମୁଖାଗ୍ନି ଦେବା ଉଚିତ । ସେତେବେଳେ କହିବା ଉଚିତ, 'ଯେ ଲୋଭମୋହରେ ତଥା ପାପପୁଣ୍ୟରେ ଥିଲେ, ସେହି ପିତାଙ୍କର ଏହି ଶବକୁ, ଏହାର ସମସ୍ତ ଅଙ୍ଗକୁ ମୁଁ ଦାହ କରୁଛି ; ସେ ଦିବ୍ୟଲୋକକୁ

* ବାରାଣସ୍ୟାଂ ତ୍ୟଜେଦ୍ୟସ୍ତୁ ପ୍ରାଣାଂଶ୍ଚୈବ ଯଦୃଚ୍ଛୟା । ଅଭୀଷ୍ଟଂ ଚ ଫଳଂ ଭୁକ୍ତ୍ୱା ମଦ୍ଦେହେ ପ୍ରବିଲୀୟତେ ॥
(ପଦ୍ମ ପୁ., ସୃଷ୍ଟି ଖ.୪୭/୨୫୨)

ଯାଆନ୍ତୁ ।’* ଏହିପରି ଦାହ କରିବା ପରେ ପୁତ୍ର ଅସ୍ଥି ସଞ୍ଚୟ ପାଇଁ କିଛିଦିନ ଅପେକ୍ଷା କରିବ ଏବଂ ଯଥାସମୟରେ ଅସ୍ଥି ସଞ୍ଚୟ କରି ଦଶାହସ୍ନାନ ପରେ ଓଦାଲୁଗା ପରିତ୍ୟାଗ କରିବା ଉଚିତ । ତା’ପରେ ଏକାଦଶଦିନ ଏକାଦଶାହ ଶ୍ରାଦ୍ଧ କରିବା ଉଚିତ ଓ ପ୍ରେତ ଶରୀରର ପୁଷ୍ଟି ପାଇଁ ଜଣେ ବ୍ରାହ୍ମଣଙ୍କୁ ଭୋଜନ କରାଇବା ଉଚିତ । ବ୍ରାହ୍ମଣଙ୍କୁ ବସ୍ତ୍ର, ପିଢ଼ା ଓ ଚରଣପାଦୁକା ଆଦି ବସ୍ତୁ ବିଧିପୂର୍ବକ ଦାନ କରିବା ଉଚିତ । ଦଶାହର ଚତୁର୍ଥ ଦିନ କରାଯାଉଥିବା (ଚତୁର୍ଥାହ), ତିନି ପକ୍ଷ ପରେ କରାଯାଉଥିବା (ତ୍ରିପାକ୍ଷିକ ବା ସାର୍ଦ୍ଧମାସିକ), ଛଅମାସ ଭିତରେ ହେଉଥିବା (ଊନଷାଣ୍ମାସିକ) ତଥା ବର୍ଷେ ଭିତରେ କରାଯାଉଥିବା (ଊନାବ୍ଦିକ) ଶ୍ରାଦ୍ଧ ଓ ତା’ଛଡ଼ା ବାର ମାସରେ ବାର ଶ୍ରାଦ୍ଧ– ଏପରି ମୋଟ ଷୋହଳ ପ୍ରକାର ଶ୍ରାଦ୍ଧ ଶାସ୍ତ୍ରରେ ସ୍ୱୀକାର କରାଯାଇଛି । ଯାହାପାଇଁ ଏହି ଷୋହଳଟି ଶ୍ରାଦ୍ଧ ଯଥାଶକ୍ତି ଶ୍ରଦ୍ଧାପୂର୍ବକ କରାଯାଏ ନାହିଁ, ତାର ପିଶାଚତ୍ୱ ରହିଯାଏ ; ଅନ୍ୟାନ୍ୟ ଶହ ଶହ ଶ୍ରାଦ୍ଧ କଲେ ମଧ୍ୟ ପ୍ରେତଯୋନିରୁ ସେ ଉଦ୍ଧାର ହୁଏ ନାହିଁ । ଏକବର୍ଷ ପରେ ବିଦ୍ୱାନ୍ ପୁତ୍ର ପାର୍ବଣ ଶ୍ରାଦ୍ଧ ବିଧିରେ ସପିଣ୍ଡୀକରଣ ନାମକ ଶ୍ରାଦ୍ଧ କରିବା ଉଚିତ ।’’

**ବ୍ରାହ୍ମଣ ପଚ୍ଚରିଲେ,** ‘‘ହେ କେଶବ ! ତପସ୍ୱୀ, ବନବାସୀ ଓ ଗୃହସ୍ଥ ବ୍ରାହ୍ମଣ ଯଦି ନିର୍ଦ୍ଧନ ହୋଇଥାନ୍ତି, ତେବେ ସେ ତାଙ୍କର ପିତୃକାର୍ଯ୍ୟ କିପରି କରିପାରିବ ।’’

**ଶ୍ରୀଭଗବାନ୍ କହିଲେ,** ‘‘ଯେ ଘାସ, କାଠ ଇତ୍ୟାଦି ବିକି ଧନ ଉପାର୍ଜନ କରି ବା ଲୋକଙ୍କୁ ମାଗି ମାଗି ପିତୃକାର୍ଯ୍ୟ କରେ, ତାହାର କର୍ମ ଲକ୍ଷେ ଗୁଣ ଅଧିକ ଫଳ ଦିଏ । କିଛି ନ ହେଲେ ବି, ପିତାଙ୍କ ତିଥି ପିଣ୍ଡଦାନରୁ ବି ଅଧିକ ଫଳ ମିଳେ । ପୂର୍ବକାଳର କଥା, ବିରାଟଦେଶରେ ଜଣେ ଅତ୍ୟନ୍ତ ଗରିବ ମଣିଷ ରହୁଥିଲା । ଦିନେ ପିତାଙ୍କ ତିଥି ଆସିଲାରୁ ସେ ବହୁତ କାନ୍ଦିଲା; କାରଣ ତା ପାଖରେ (ଶ୍ରାଦ୍ଧସାମଗ୍ରୀ କିଣିବାକୁ) ଟଙ୍କାପଇସା ନ ଥାଏ । ବହୁତ କାନ୍ଦିବା ପରେ ସେ ଜଣେ ବିଦ୍ୱାନ୍

* ଲୋଭମୋହସମାଯୁକ୍ତଂ ପାପପୁଣ୍ୟସମାବୃତମ୍ । ଦହେୟଂ ସର୍ବଗାତ୍ରାଣି ଦିବ୍ୟାଁଲ୍ଲୋକାନ୍ ସ ଗଚ୍ଛତୁ ॥
(ପଦ୍ମ ପୁ., ସୃଷ୍ଟି ଖ.୪୭/୨୬୬)

ବ୍ରାହ୍ମଣଙ୍କୁ ପଗ୍ଚରିଲା, 'ହେ ଗୋସେଇଁ! ଆଜି ମୋ ପିତାଙ୍କର ତିଥି; କିନ୍ତୁ ମୋ ପାଖରେ ଧନ ବୋଲି କାଣି-କଉଡ଼ିଟିଏ ମଧ୍ୟ ନାହିଁ; ଏପରି ଅବସ୍ଥାରେ ମୁଁ କିପରି ବାପାଙ୍କ ଶ୍ରାଦ୍ଧ କରିବି ! ଆପଣ ମୋତେ ଏପରି ଉପଦେଶ ଦିଅନ୍ତୁ ଯେ, ମୁଁ ଧର୍ମରେ ରହିପାରିବି ।''

**ବ୍ରାହ୍ମଣ କହିଲେ,** ''ହେ ବାପ ! ବର୍ତ୍ତମାନ 'କୁତପ' ନାମକ ମୁହୂର୍ତ୍ତ ଗ୍ଚଲୁଛି । ତୁମେ ଶୀଘ୍ର ବଣକୁ ଯାଅ ଓ ଘାସ ଆଣି ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ଗୋରୁଙ୍କୁ ଖୁଆଅ ।''

ବ୍ରାହ୍ମଣଙ୍କ ଉପଦେଶ ଶୁଣି ସେ ବଣକୁ ଗଲା ଓ ଘାସ ବିଡ଼ାଏ ଆଣି ବଡ଼ ଆନନ୍ଦରେ ପିତାଙ୍କ ତୃପ୍ତି ପାଇଁ ଗୋରୁଙ୍କୁ ଖୁଆଇଲା । ସେହି ପୁଣ୍ୟର ପ୍ରଭାବରେ ସେ ଦେବଲୋକକୁ ଗ୍ଚଲିଗଲା । ପିତୃଯଜ୍ଞଠାରୁ ବଳି ଅନ୍ୟ କୌଣସି ଧର୍ମ ନାହିଁ; ଏଣୁ ସକଳ ପ୍ରକାର ଯତ୍ନ କରି, ମାତ୍ସର୍ଯ୍ୟ ତ୍ୟାଗ କରି ନିଜ ଶକ୍ତି ଅନୁସାରେ ଶ୍ରାଦ୍ଧ କରିବା ଉଚିତ । ଯେ ଏହି ଧର୍ମସନ୍ତାନ (ଧର୍ମ ବିସ୍ତାରକାରୀ) ଅଧ୍ୟାୟ ପାଠ କରି ଲୋକଙ୍କୁ ଶୁଣାନ୍ତି; ତାଙ୍କୁ ପ୍ରତ୍ୟେକ ଲୋକରେ ଗଙ୍ଗାଜଳରେ ସ୍ନାନ କରିବାର ଫଳ ମିଳେ । ଗତଜନ୍ମମାନଙ୍କରେ ମହାପାତକ ଅର୍ଜନ କରିଥିବା ଲୋକ ମଧ୍ୟ ଏହି ଅଧ୍ୟାୟ ଥରେ ମାତ୍ର ପଠନ ବା ଶ୍ରବଣ କଲେ ତାର ସବୁ ପାପ ନଷ୍ଟ ହୋଇଯାଏ ।



## ପତିବ୍ରତା ବ୍ରାହ୍ମଣୀର ଉପାଖ୍ୟାନ, କୁଳଟାସ୍ତ୍ରୀମାନଙ୍କ ସମ୍ବନ୍ଧରେ ଉମା-ନାରଦ-ସମ୍ବାଦ, ପତିବ୍ରତାର ମହିମା ଓ କନ୍ୟାଦାନର ଫଳ –

**ନରୋତ୍ତମ ପଗ୍ଚରିଲେ**–''ହେ ନାଥ ! ପତିବ୍ରତା ସ୍ତ୍ରୀ ମୋର ଘଟିଯାଇଥିବା ବୃତ୍ତାନ୍ତକୁ କିପରି ଜାଣିଲେ ? ଏହା କିପରି ସମ୍ଭବ ହେଲା ? କୃପା କରି ମୋତେ ତାହା କହନ୍ତୁ ।''

**ଶ୍ରୀଭଗବାନ୍ କହିଲେ** – "ହେ ବତ୍ସ ! ମୁଁ ଏହିକଥା ତୁମକୁ ପ୍ରଥମରୁ କହିସାରିଛି; କିନ୍ତୁ ଯଦି ପୁଣି ଥରେ ଶୁଣିବାକୁ କୌତୂହଳ ହେଉଛି, ତା'ହେଲେ ଶୁଣ । ତୁମ ମନରେ ଯାହା କିଛି ପ୍ରଶ୍ନ ଅଛି, ମୁଁ ସେସବୁର ଉତ୍ତର ଦେଇଦେଉଛି । ଯେଉଁ ସ୍ତ୍ରୀ ପତିବ୍ରତା, ଯେ ପତିଙ୍କୁ ପ୍ରାଣ ପରି ମାନେ ଓ ସଦା ପତିଙ୍କ ହିତସାଧନରେ ଲାଗିରହେ, ସେ ଦେବତା ଓ ବ୍ରହ୍ମବାଦୀ ମୁନିମାନଙ୍କ ସଦୃଶ୍ୟ ପୂଜ୍ୟ ହୁଏ । ଯେଉଁ ନାରୀ ଜଣେମାତ୍ର ପୁରୁଷର ସେବା ସ୍ୱୀକାର କରେ ; ଅନ୍ୟ କାହାରିକୁ ଦୃଷ୍ଟି ଦିଏ ନାହିଁ, ସେ ସଂସାରରେ ପରମ ପୂଜନୀୟା ବୋଲି ସ୍ୱୀକାର କରାଯାଇଛି ।

"ହେ ତାତ ! ପ୍ରାଚୀନକାଳର କଥା, ମଧ୍ୟପ୍ରଦେଶରେ ଗୋଟିଏ ଅତ୍ୟନ୍ତ ସୁନ୍ଦର ନଗର ଥିଲା । ସେଥିରେ ଜଣେ ପତିବ୍ରତା ବ୍ରାହ୍ମଣୀ ରହୁଥିଲେ; ତାଙ୍କର ନାମ ଶୈବ୍ୟା । ତାଙ୍କ ସ୍ୱାମୀ ପୂର୍ବଜନ୍ମର ପାପରୁ କୁଷ୍ଠରୋଗୀ ହୋଇଯାଇଥିଲେ; ତାଙ୍କ ଶରୀରରେ ଅନେକ ଘାଆ ହୋଇଯାଇଥିଲା; ସେଥିରୁ ବରାବର ପୂଜପାଣି ବହୁଥିଲା । ଶୈବ୍ୟା ନିଜର ରୁଗ୍ଣ ସ୍ୱାମୀଙ୍କ ସେବାରେ ସର୍ବଦା ସଂଲଗ୍ନ ରହୁଥିଲେ । ସ୍ୱାମୀଙ୍କ ମନରେ ଯେବେ ଯାହା ଇଚ୍ଛା ହେଉଥିଲା, ସେ ନିଜ ଶକ୍ତି ଅନୁସାରେ ତାହା ଅବଶ୍ୟ ପୂର୍ଣ୍ଣ କରୁଥିଲେ । ପ୍ରତିଦିନ ସ୍ୱାମୀଙ୍କୁ ଦେବତାଙ୍କ ପରି ପୂଜା କରୁଥିଲେ ଓ ଦୋଷବୁଦ୍ଧି ତ୍ୟାଗ କରି ତାଙ୍କ ପ୍ରତି ବିଶେଷ ସ୍ନେହ ରଖିଥିଲେ । ଦିନେ ତାଙ୍କ ସ୍ୱାମୀ ରାସ୍ତାରେ ଯାଉଥିବା ଜଣେ ପରମ ସୁନ୍ଦରୀ ବେଶ୍ୟାକୁ ଦେଖିଲେ । ତା ଉପରେ ଦୃଷ୍ଟି ପଡ଼ିବାମାତ୍ରେ ସେ ଅତ୍ୟନ୍ତ ମୋହାସକ୍ତ ହୋଇଗଲେ । ତାଙ୍କ ଚେତନାକୁ କାମଦେବ ପୂରା ଅଧିକାର କରିନେଲେ । ସେ ବହୁସମୟ ପର୍ଯ୍ୟନ୍ତ ଦୀର୍ଘଶ୍ୱାସ ନେଲେ ଓ ଶେଷରେ ଅତ୍ୟନ୍ତ ଉଦାସ ହୋଇଗଲେ । ତାଙ୍କର ଉଚ୍ଛ୍ୱାସ ଶୁଣି ପତିବ୍ରତା ଘରୁ ବାହାରି ଆସିଲେ ଓ ନିଜ ସ୍ୱାମୀଙ୍କୁ ପଚାରିଲେ, "ହେ ନାଥ ! ଆପଣ ଉଦାସ କାହିଁକି ହୋଇଗଲେ ? ଆପଣ ଦୀର୍ଘଶ୍ୱାସ କାହିଁକି ନେଲେ ? ପ୍ରଭୋ ! ଆପଣଙ୍କର ଯାହା ପ୍ରିୟ, ତାହା ମୋତେ କହନ୍ତୁ । ତାହା କରିବାଯୋଗ୍ୟ ହେଉ ବା ନ ହେଉ, ମୁଁ ଆପଣଙ୍କ ପ୍ରିୟକାର୍ଯ୍ୟ ଅବଶ୍ୟ ପୂର୍ଣ୍ଣ କରିବି । ଏକମାତ୍ର ଆପଣ ହିଁ ମୋର ଗୁରୁ ଓ ପ୍ରିୟତମ ।"

ପତ୍ନୀ ଏପରି କହିବାରୁ ତାଙ୍କ **ସ୍ୱାମୀ କହିଲେ**, "ହେ ପ୍ରିୟେ ! ସେହି କାର୍ଯ୍ୟକୁ ନା ତୁମେ ପୂର୍ଣ୍ଣ କରିପାରିବ, ନା ମୁଁ; ଏଣୁ ବୃଥାରେ ତାହା କହିବା ଉଚିତ ନୁହେଁ ।"

**ପତିବ୍ରତା କହିଲେ,** "ହେ ନାଥ ! ମୋର ବିଶ୍ୱାସ ଅଛି ଯେ, ମୁଁ ଆପଣଙ୍କ ମନୋରଥ ଜାଣି ତାହା ସିଦ୍ଧ କରିପାରିବି ; ଆପଣ ମୋତେ ଆଜ୍ଞା ଦିଅନ୍ତୁ । ଯେକୌଣସି ଉପାୟରେ ହେଉ, ମୋତେ ଆପଣଙ୍କ କାର୍ଯ୍ୟ ସିଦ୍ଧ କରିବାକୁ ହେବ । ଯଦି ମୁଁ ଯତ୍ନ କରି ଆପଣଙ୍କ ଦୁଷ୍କର କାର୍ଯ୍ୟ ପୂର୍ଣ୍ଣ କରିପାରିବି, ତେବେ ଇହଲୋକ ଓ ପରଲୋକରେ ମୋର ପରମ କଲ୍ୟାଣ ହେବ ।"

**କୁଷ୍ଠରୋଗୀ କହିଲେ,** "ହେ ସାଧ୍ୱୀ ! ଏହି ରାସ୍ତାରେ ଜଣେ ପରମ ସୁନ୍ଦରୀ ବେଶ୍ୟା ଯାଉଥିଲା । ତାର ରୂପଟି ବଡ଼ ରମଣୀୟ ହୋଇଥିଲା । ତାକୁ ଦେଖି ମୋର ଶରୀର କାମାଗ୍ନିରେ ଦଗ୍ଧ ହେଉଛି । ଯଦି ତୁମ କୃପାରୁ ମୁଁ ସେହି ନବଯୌବନାକୁ ପାଇପାରିବି, ତାହେଲେ ମୋ ଜନ୍ମ ସଫଳ ହୋଇଯିବ । ତୁମେ ତାକୁ ସାକ୍ଷାତ୍ କରାଇ ମୋର ହିତସାଧନ କର ।"

**ସ୍ୱାମୀଙ୍କ କଥା ଶୁଣି ପତିବ୍ରତା କହିଲେ** – "ହେ ପ୍ରଭୋ ! ଟିକିଏ ଧୈର୍ଯ୍ୟ ଧରନ୍ତୁ । ମୁଁ ଆପଣଙ୍କ କାର୍ଯ୍ୟ ସିଦ୍ଧ କରିବି ।"

ଏହା କହି ପତିବ୍ରତା ମନେ-ମନେ କିଛି ବିଚାର କଲେ ଏବଂ ରାତି ନ ପାହୁଣୁ ଉଷାକାଳରେ ଉଠି ସେ ଗୋବର ଓ ଝାଡୁ ଧରି ଘରୁ ବାହାରିପଡ଼ିଲେ । ଯିବା ସମୟରେ ତାଙ୍କ ମନରେ ବଡ଼ ପ୍ରସନ୍ନତା ଥିଲା । ବେଶ୍ୟାଘରେ ପହଞ୍ଚି ସେ ତାର ଅଗଣା ଓ ଗଳି ଝାଡୁ କଲେ ଏବଂ ଗୋବରରେ ଲିପିପୋଛି ସାରି, ଲୋକଙ୍କ ଦୃଷ୍ଟି ନ ପଡୁଣୁ ଶୀଘ୍ର ନିଜଘରକୁ ଫେରି ଆସିଲେ । ଏହିପରି କ୍ରମାଗତ ତିନିଦିନ ପର୍ଯ୍ୟନ୍ତ ସେ ବେଶ୍ୟାଘରେ ଝାଡୁ ଦେବା ଓ ଲିପିବା କାମ କଲେ । ସେହି ବେଶ୍ୟା ନିଜ ଦାସଦାସୀଙ୍କୁ ପଚାରିବାକୁ ଲାଗିଲା, 'ଆଜି ଅଗଣାଟି କିଏ ଏତେ ବଢ଼ିଆ ପରିଷ୍କାର କରିଛି ?' ଦାସଦାସୀମାନେ ବେଶ୍ୟାକୁ କହିଲେ, 'ମାଆ ! ଘରର ପରିଷ୍କାର କାମ ତ ଆମେମାନେ କରିନାହୁଁ ।' ଏହା ଶୁଣି ବେଶ୍ୟାକୁ ବଡ଼ ଆଶ୍ଚର୍ଯ୍ୟ ଲାଗିଲା; ସେ ଏହି ବିଷୟରେ ବହୁ ସମୟ ବିଚାର କଲା ଏବଂ ରାତି ପାହୁ

ପାହୁ ସେ ଉଠିଲାମାତ୍ରେ ତା ଦୃଷ୍ଟି ସେହି ପରମସାଧ୍ୱୀ ପତିବ୍ରତା ବ୍ରାହ୍ମଣୀଙ୍କ ଉପରେ ପଡ଼ିଗଲା । ସେ ପୁଣି ଥରେ ସେବା କରିବାକୁ ଆସିଥିଲେ । ସେହି ପତିବ୍ରତା ବ୍ରାହ୍ମଣୀକୁ ଦେଖି, 'ହାୟ ! ଆପଣ ଏ କ'ଣ କରୁଛନ୍ତି ! କ୍ଷମା କରନ୍ତୁ ।' ଏପରି କହି, **ବେଶ୍ୟା ଯାଇ ତାଙ୍କ ପାଦ ଧରି କହିଲା,** 'ପତିବ୍ରତେ ! ଆପଣ ମୋର ଆୟୁ, ଶରୀର, ସମ୍ପତ୍ତି, ଯଶ ତଥା କୀର୍ତ୍ତି – ସବୁ ନାଶ କରିଦେବାକୁ ଏପରି ଚେଷ୍ଟା କରୁଛନ୍ତି । ହେ ସାଧ୍ୱୀ, ଆପଣ ଯାହା ମାଗିବେ, ମୁଁ ନିଶ୍ଚୟ ତାହା ଦେବି । ମୁଁ ଏହା ଶପଥ କରି କହୁଛି । ସୁବର୍ଣ୍ଣ, ରତ୍ନ, ମଣି, ବସ୍ତ୍ର ଆଦି ଯାହାକିଛି ଅଭିଳାଷ, ତାହା ମାଗନ୍ତୁ ।''

**ପତିବ୍ରତା** ସେହି ବେଶ୍ୟାକୁ **କହିଲେ**, ''ମୋର ଧନ ଲୋଡ଼ା ନାହିଁ ; ତୁମଦ୍ୱାରା କିଛି କାମ ଅଛି ; ଯଦି କରିବ, ତେବେ କହିବି । ସେହି କାର୍ଯ୍ୟ ସିଦ୍ଧି ହେଲେ ହିଁ ମୋ ହୃଦୟରେ ସନ୍ତୋଷ ଆସିବ ଓ ମୁଁ ବୁଝିବି ଯେ, ତୁମେ ମୋର ସବୁ ମନୋରଥ ପୂର୍ଣ୍ଣ କରିଦେଲ ।''

**ବେଶ୍ୟା କହିଲା** – ''ହେ ପତିବ୍ରତେ ! ଆପଣ ଶୀଘ୍ର କହନ୍ତୁ ; ମୁଁ ସତ କହୁଛି, ଆପଣଙ୍କ ଅଭୀଷ୍ଟ କାର୍ଯ୍ୟ ଅବଶ୍ୟ କରିବି । ମାତା ! ଆପଣ ତୁରନ୍ତ ନିଜର ଆବଶ୍ୟକତା କହି ମୋତେ ରକ୍ଷା କରନ୍ତୁ ।''

ପତିବ୍ରତା ଲାଜ-ଲାଜ ହୋଇ ତାଙ୍କ ସ୍ୱାମୀଙ୍କୁ ଯାହା ପ୍ରିୟ ଲାଗୁଥିଲା, ତାହା କହିଦେଲେ । ତାହା ଶୁଣି ବେଶ୍ୟା କିଛି କ୍ଷଣ ନିଜର କର୍ତ୍ତବ୍ୟ ଓ ତାଙ୍କ ପତିଙ୍କ ପୀଡ଼ା ଉପରେ କିଛି ବିଗ୍ୱର କଲା । କୁତ୍ସିତ କୁଷ୍ଟରୋଗୀ ସହିତ ସଂସର୍ଗ କରିବା କଥା ଭାବି ତା ମନରେ ବଡ଼ ଦୁଃଖ ହେଲା । ତଥାପି **ସେ ପତିବ୍ରତାଙ୍କୁ କହିଲା,** ''ହେ ଦେବି ! ଯଦି ଆପଣଙ୍କ ସ୍ୱାମୀ ମୋ ଘରକୁ ଆସିବେ, ତା'ହେଲେ ମୁଁ ଦିନେ ତାଙ୍କ ଇଚ୍ଛା ପୂର୍ଣ୍ଣ କରିବି ।''

**ପତିବ୍ରତା କହିଲେ,** ''ହେ ସୁନ୍ଦରି ! ମୁଁ ଆଜି ହିଁ ରାତିରେ ନିଜ ସ୍ୱାମୀଙ୍କୁ ନେଇ ତୁମ ଘରକୁ ଆସିବି ଓ ସେ ନିଜ ଅଭୀଷ୍ଟ ବସ୍ତୁ ଉପଭୋଗ କରି ସନ୍ତୁଷ୍ଟ ହୋଇଗଲେ, ମୁଁ ତାଙ୍କୁ ନିଜ ଘରକୁ ନେଇଯିବି ।''

**ବେଶ୍ୟା କହିଲା** – ''ହେ ମହାଭାଗେ ! ଶୀଘ୍ର ନିଜ ଘରକୁ ଯାଆନ୍ତୁ, ଆପଣଙ୍କ ସ୍ୱାମୀ ଆଜି ଅଧରାତିରେ ମୋ ଘରକୁ ଆସିବେ ।''

ଏହା ଶୁଣି ସେହି ପତିବ୍ରତା ନିଜ ଘରକୁ ଗ୍ୱଲିଆସିଲେ । ସେଠାରେ

ପହଞ୍ଚି **ସେ ସ୍ୱାମୀଙ୍କୁ ନିବେଦନ କଲେ** – "ହେ ପ୍ରଭୋ ! ଆପଣଙ୍କ କାର୍ଯ୍ୟ ସଫଳ ହୋଇଗଲା । ଆଜି ରାତିରେ ହିଁ ଆପଣଙ୍କୁ ତା ଘରକୁ ଯିବାକୁ ହେବ ।"

**କୁଷ୍ଠରୋଗୀ ବ୍ରାହ୍ମଣ କହିଲେ,** "ହେ ଦେବି ! ମୁଁ କିପରି ତା ଘରକୁ ଯିବି, ମୁଁ ତ ଚାଲିପାରୁନାହିଁ । ସେହି କାର୍ଯ୍ୟ କିପରି ସିଦ୍ଧ ହେବ ?"

**ପତିବ୍ରତା କହିଲେ,** "ହେ ପ୍ରାଣନାଥ ! ମୁଁ ଆପଣଙ୍କୁ ମୋ ପିଠିରେ ବସାଇ ନେଇ ତା' ଘରେ ପହଞ୍ଚାଇଦେବି ଓ ଆପଣଙ୍କ ମନୋରଥ ସିଦ୍ଧ ହେବାପରେ ଫେରାଇ ଆଣିବି ।"

**ବ୍ରାହ୍ମଣ କହିଲେ,** "ହେ କଲ୍ୟାଣି ! ତୁମ ହେତୁ ହିଁ ମୋ କାର୍ଯ୍ୟ ସିଦ୍ଧ ହେବ । ତୁମେ ଯେଉଁ କାମ କରିଛ, ତାହା ଅନ୍ୟ ସ୍ତ୍ରୀଙ୍କ ପାଇଁ ଦୁଷ୍କର ।"

**ଶ୍ରୀଭଗବାନ୍ କହିଲେ,** "ସେହି ନଗରରେ କୌଣସି ଜଣେ ଧନୀଘରୁ ଚୋରମାନେ ବହୁତ ଧନ ଚୋରି କରିନେଲେ । ଏହା ରାଜାଙ୍କ କାନରେ ପଡ଼ିଲାରୁ, ସେ ରାତିରେ ବୁଲୁଥିବା ସମସ୍ତ ଗୁପ୍ତଚରଙ୍କୁ ଡାକିଲେ ଓ ରାଗ କରି କହିଲେ, "ଯଦି ତୁମମାନଙ୍କର ବଞ୍ଚିବାର ଇଚ୍ଛା ଅଛି, ତାହେଲେ ଆଜି ଚୋରମାନଙ୍କୁ ଧରି ମୋ ଅଧୀନ କର ।" ରାଜାଙ୍କ ଆଜ୍ଞା ପାଇ ସବୁ ଗୁପ୍ତଚର ବ୍ୟାକୁଳ ହୋଇ ଉଠିଲେ ଓ ଚୋରଙ୍କୁ ଧରିବା ପାଇଁ ଚାଲିଲେ । ସେହି ନଗର ପାଖରେ ହିଁ ଗୋଟିଏ ଘୋର ଜଙ୍ଗଲ ଥିଲା, ଯେଉଁଠି ଏକ ବୃକ୍ଷମୂଳେ ମହାତେଜସ୍ୱୀ ମୁନିବର ମାଣ୍ଡବ୍ୟ ସମାଧିରେ ବସିଥିଲେ । ସେ ଯୋଗୀମାନଙ୍କ ମଧ୍ୟରେ ପ୍ରଧାନ ମହର୍ଷି ଅଗ୍ନିଙ୍କ ସମାନ ଜାଜ୍ୱଲ୍ୟମାନ ହେଉଥିଲେ । ବ୍ରହ୍ମାଙ୍କ ସମାନ ମହର୍ଷି ସେହି ମହାମୁନିଙ୍କୁ ଦେଖି ଦୁଷ୍ଟ ଗୁପ୍ତଚରମାନେ ଭାବିଲେ, 'ଇଏହିଁ ଚୋର । ଏହି ଧୂର୍ତ୍ତ ଅଦ୍ଭୁତ ରୂପ ଧରି ଏହି ଜଙ୍ଗଲରେ ନିବାସ କରୁଛି ।' ଏପରି କହି ସେହି ପାପୀମାନେ ମୁନିଶ୍ରେଷ୍ଠ ମାଣ୍ଡବ୍ୟଙ୍କୁ ବାନ୍ଧିନେଲେ । ସେହି କଠୋର ସ୍ୱଭାବୀ ମନୁଷ୍ୟମାନଙ୍କୁ ମୁନି କିଛି କହିଲେ ନାହିଁ, ତାଙ୍କ ଆଡ଼କୁ ଦୃଷ୍ଟିପାତ ବି କଲେ ନାହିଁ । ଗୁପ୍ତଚରମାନେ ତାଙ୍କୁ ବାନ୍ଧି ରାଜାଙ୍କ ପାଖକୁ ନେଇଯିବାରୁ ରାଜା କହିଲେ, 'ଆଜି ମୋତେ ଚୋର ମିଳିଛି । ତୁମେମାନେ ଏହାକୁ ନଗରର ନିକଟବର୍ତ୍ତୀ ପ୍ରବେଶଦ୍ୱାର ମାର୍ଗରେ ନେଇଯାଅ ଓ ଚୋର ପାଇଁ ଯାହା ଦଣ୍ଡ ନିୟମ

ଅଛି, ଏହାକୁ ତାହା ଦିଅ ।' ସେମାନେ ମାଣ୍ଡବ୍ୟମୁନିଙ୍କୁ ସେଠାକୁ ନେଇଯାଇ ରାସ୍ତାରେ ପୋତା ହୋଇଥିବା ଶୂଳ ଉପରେ ବସାଇଦେଲେ । ସେହି ଶୂଳ ମୁନିଙ୍କ ଗୁହ୍ୟଦ୍ୱାରରେ ପଶି ମୁଣ୍ଡ ବାଟେ ବାହାରିପଡ଼ିଲା । ତାଙ୍କର ଶରୀର ଶୂଳରେ ବିଦ୍ଧ ହୋଇଗଲା । ସେହି ରାତିଅଧରେ ବ୍ରାହ୍ମଣୀ ନିଜ ସ୍ୱାମୀଙ୍କୁ ପିଠିରେ ବସାଇ ବେଶ୍ୟାର ଘରକୁ ଯାଉଥିଲେ । ସେ ମୁନିଙ୍କ ପାଖଦେଇ ଗଲାବେଳେ ସେହି କୁଷ୍ଠରୋଗୀର ଶରୀର ମାଣ୍ଡବ୍ୟମୁନିଙ୍କ ଶରୀରରେ ବାଜିଗଲା । କୁଷ୍ଠରୋଗୀର ସ୍ପର୍ଶଦ୍ୱାରା ତାଙ୍କର ସମାଧି ଭାଙ୍ଗି ଗଲା । ସେ କ୍ରୁଦ୍ଧ ହୋଇ କହିଲେ, 'ଯେ ଏହି ସମୟରେ ମୋତେ ଗଭୀର ବେଦନା ଅନୁଭବ କରାଉଥିବା କଷ୍ଟମୟ ଅବସ୍ଥାରେ ପହଞ୍ଚାଇଦେଲା, ସେ ସୂର୍ଯ୍ୟୋଦୟ ହେବାକ୍ଷଣି ଭସ୍ମ ହୋଇଯାଉ ।'

ମାଣ୍ଡବ୍ୟ ଏତିକି କହିବାମାତ୍ରେ ସେହି କୁଷ୍ଠରୋଗୀ ପୃଥିବୀ ଉପରେ ଖସିପଡ଼ିଲା, କିନ୍ତୁ **ପତିବ୍ରତା କହିଲେ**, 'ଆଜିଠାରୁ ସୂର୍ଯ୍ୟ ହିଁ ଉଦୟ ନ ହେଉ ।' ଏପରି କହି ସେ ନିଜ ସ୍ୱାମୀଙ୍କୁ ଘରକୁ ନେଇଗଲେ ଓ ଏକ ସୁନ୍ଦର ଶଯ୍ୟା ଉପରେ ଶୁଆଇଦେଇ ନିଜେ ତାଙ୍କୁ ଧରି ବସିଲେ । ତେଣେ ମୁନିଶ୍ରେଷ୍ଠ ମାଣ୍ଡବ୍ୟ ସେହି କୁଷ୍ଠରୋଗୀକୁ ଶାପ ଦେଇ ନିଜର ବାଞ୍ଛିତ ସ୍ଥାନକୁ ଚାଲିଗଲେ । ଏପଟେ ତିନିଦିନ ବିତିଗଲା । ସୂର୍ଯ୍ୟୋଦୟ ହେଲା ନାହିଁ । ଚରାଚର ପ୍ରାଣୀମାନଙ୍କ ସହିତ ତ୍ରିଲୋକ ବ୍ୟଥିତ ହୋଇଉଠିଲା । ଏହା ଦେଖି ସବୁ ଦେବତା ଇନ୍ଦ୍ରଙ୍କୁ ନେଇ ବ୍ରହ୍ମାଙ୍କ ପାଖକୁ ଗଲେ ଏବଂ ସୂର୍ଯ୍ୟୋଦୟ ନ ହେବାର ସୂଚନା ଦେଇ କହିଲେ, 'ହେ ଭଗବନ୍ ! ସୂର୍ଯ୍ୟୋଦୟ ନ ହେବାର କାରଣ କ'ଣ ? ଏହା ବୁଝିପାରୁନୁ । ଆପଣ ଯାହା କରିବା ଉଚିତ, କରନ୍ତୁ ।' ସେମାନଙ୍କ କଥା ଶୁଣି ବ୍ରହ୍ମା ପତିବ୍ରତା ବ୍ରାହ୍ମଣୀ ଓ ମାଣ୍ଡବ୍ୟ ମୁନିଙ୍କର ସାରା ବୃତ୍ତାନ୍ତ କହି ଶୁଣାଇଦେଲେ । ତା'ପରେ ଦେବତାମାନେ ବିମାନରେ ବସି ବ୍ରହ୍ମାଙ୍କ ସହ ପୃଥିବୀରେ ସେହି କୁଷ୍ଠରୋଗୀ ବ୍ରାହ୍ମଣଙ୍କ ଘରକୁ ଗଲେ । ସେମାନଙ୍କ ବିମାନମାନଙ୍କର କାନ୍ତି ତଥା ମୁନିମାନଙ୍କ ତେଜରେ ପତିବ୍ରତାଙ୍କ ଘରେ ଶହ ଶହ ସୂର୍ଯ୍ୟ ପରି ଆଲୋକ ଖେଳିଗଲା । ତା'ଫଳରେ ହଂସ ପରି ତେଜୀୟାନ୍ ବିମାନମାନଦ୍ୱାରା ଆସିଥିବା ଦେବତାମାନଙ୍କୁ ପତିବ୍ରତା ଦେଖିଲେ । ସେ (ନିଜ ସ୍ୱାମୀଙ୍କ

ପାଖରେ) ପଡ଼ି ରହିଥିଲେ । ବ୍ରହ୍ମା ତାଙ୍କୁ ସମ୍ବୋଧନ କରି କହିଲେ, 'ହେ ମାତ ! ଯଦ୍ଦ୍ୱାରା ସକଳ ଦେବତା, ବ୍ରାହ୍ମଣ ଓ ଗୋରୁ ଆଦି ପ୍ରାଣୀମାନଙ୍କ ମୃତ୍ୟୁ ହେବାର ସମ୍ଭାବନା ରହିଛି, ସେପରି କାର୍ଯ୍ୟ କରିବାକୁ ତୁମେ କାହିଁକି ପସନ୍ଦ କଲ ? ସୂର୍ଯ୍ୟୋଦୟ ବିରୁଦ୍ଧରେ ତୁମର ଯେଉଁ କ୍ରୋଧ, ତାହା ତ୍ୟାଗ କର ।'

**ପତିବ୍ରତା କହିଲେ,** ''ହେ ଭଗବନ୍ ! କେବଳ ସ୍ୱାମୀ ହିଁ ମୋର ଗୁରୁ । ଏ ମୋ ପାଇଁ ସମସ୍ତ ଲୋକମାନଙ୍କ ଠାରୁ ଅଧିକ । ସୂର୍ଯ୍ୟୋଦୟ ହେବାକ୍ଷଣି ମୁନିଙ୍କ ଶାପରେ ଏହାଙ୍କ ମୃତ୍ୟୁ ହୋଇଯିବ, ତେଣୁ ମୁଁ ସୂର୍ଯ୍ୟଙ୍କୁ ଶାପ ଦେଇଛି । କ୍ରୋଧ, ମୋହ, ଲୋଭ, ମାତ୍ସର୍ଯ୍ୟ ବା କାମବଶ ହୋଇ ମୁଁ ଏପରି କରିନାହିଁ ।''

**ବ୍ରହ୍ମା କହିଲେ,** ''ହେ ମାତ ! ଯେଉଁଠି ଜଣଙ୍କ ମୃତ୍ୟୁରେ ତିନିଲୋକର ହିତ ହେଉଅଛି, ସେଠାରେ ଶାପ ନ ଦେଲେ ତୁମର ବହୁତ ପୁଣ୍ୟ ହେବ ।''

**ପତିବ୍ରତା କହିଲେ,** ''ପତିଙ୍କୁ ତ୍ୟାଗ କରି ମୋତେ ଆପଣଙ୍କ ପରମକଲ୍ୟାଣମୟ ସତ୍ୟଲୋକ ମଧ୍ୟ ଭଲ ଲାଗେ ନାହିଁ ।''

**ବ୍ରହ୍ମା କହିଲେ,** ''ହେ ଦେବି ! ସୂର୍ଯ୍ୟୋଦୟ ହୋଇ ଯେତେବେଳେ ସାରା ତ୍ରିଲୋକ ସୁସ୍ଥ ହୋଇଯିବ, ସେତେବେଳେ ତୁମ ସ୍ୱାମୀ ଭସ୍ମ ହୋଇଯିବାପରେ ମଧ୍ୟ ମୁଁ ତୁମର କଲ୍ୟାଣ ସାଧନ କରିବି । ଆମମାନଙ୍କ ଆଶୀର୍ବାଦରୁ ଏହି କୁଷ୍ଠରୋଗୀ ବ୍ରାହ୍ମଣ କାମଦେବଙ୍କ ସମାନ ସୁନ୍ଦର ହୋଇଯିବେ ।'' ବ୍ରହ୍ମା ଏପରି କହିବାରୁ ସେହି ସତୀ କ୍ଷଣକ ପାଇଁ କିଛି ବିଚାର କଲେ ; ତା'ପରେ ସେ 'ହଁ' କହି ସ୍ୱୀକୃତି ଦେଇଦେଲେ । ତା'ପରେ ସଙ୍ଗେ ସଙ୍ଗେ ସୂର୍ଯ୍ୟୋଦୟ ହେଲା ଓ ମୁନିଙ୍କ ଶାପରେ ପୀଡ଼ିତ ବ୍ରାହ୍ମଣ ଏକ ପାଉଁଶ ଗଦାରେ ପରିଣତ ହୋଇଗଲେ; କିନ୍ତୁ ସେହି ପାଉଁଶରୁ କାମଦେବଙ୍କ ପରି ସୁନ୍ଦର ରୂପ ଧାରଣ କରି ସେହି ବ୍ରାହ୍ମଣ ପ୍ରକଟ ହୋଇଗଲେ । ଏହା ଦେଖି ସମସ୍ତ ପୁରବାସୀ ବିସ୍ମୟରେ ପଡ଼ିଗଲେ । ଦେବତା ପ୍ରସନ୍ନ ହୋଇଗଲେ । ସମସ୍ତଙ୍କ ଚିତ୍ତ ଆନନ୍ଦିତ ହେଲା । ସେହି ସମୟରେ ସ୍ୱର୍ଗଲୋକରୁ ସୂର୍ଯ୍ୟଙ୍କ ପରି ଏକ ତେଜୀୟାନ୍ ବିମାନ ଆସିଲା

ଓ ସେହି ସାଧ୍ୱୀ ନିଜ ପତିଙ୍କ ସହ ସେଥିରେ ବସି ଦେବତାମାନଙ୍କ ସହିତ ସ୍ୱର୍ଗକୁ ଚାଲିଗଲେ ।

ଶୁଭା ମଧ୍ୟ ଏହିପରି ପତିବ୍ରତା ; ତେଣୁ ସେ ମୋ ସମାନ । ସେହି ସତୀତ୍ୱର ପ୍ରଭାବରେ ହିଁ ସେ ଭୂତ, ଭବିଷ୍ୟତ ଓ ବର୍ତ୍ତମାନ ତିନିକାଳର କଥା ଜାଣେ । ଯେଉଁ ମନୁଷ୍ୟ ଏହି ଉତ୍ତମ ଉପାଖ୍ୟାନ ଲୋକଙ୍କୁ ଶୁଣାଇବ, ତା'ର ଜନ୍ମ-ଜନ୍ମର ପାପ ନାଶ ହୋଇଯିବ ।''

**ବ୍ରାହ୍ମଣ ପଚାରିଲେ,** ''ହେ ଭଗବନ୍ ! ମାଣ୍ଡବ୍ୟ ମୁନିଙ୍କ ଶରୀରରେ ଶୂଳର ଆଘାତ କିପରି ଲାଗିଲା ତଥା ପତିବ୍ରତା ସ୍ତ୍ରୀଙ୍କ ସ୍ୱାମୀଙ୍କୁ କୁଷ୍ଠରୋଗ କାହିଁକି ହେଲା ?''

**ଭଗବାନ୍ ଶ୍ରୀବିଷ୍ଣୁ କହିଲେ,** ''ମାଣ୍ଡବ୍ୟ ମୁନି ଯେତେବେଳେ ବାଳକ ଥିଲେ, ସେତେବେଳେ ସେ ମୋହବଶ ହୋଇ ଗୋଟିଏ ଝିଣ୍ଟିକାର ଗୁହ୍ୟଦ୍ୱାରରେ ତୃଣ ପୂରାଇ ଛାଡ଼ିଦେଇଥିଲେ । ସେ ସମୟରେ ତାଙ୍କର ଧର୍ମଜ୍ଞାନ ନ ଥିଲା ; ତଥାପି ସେହି ଦୋଷରୁ ତାଙ୍କୁ ଗୋଟିଏ ଦିନ ଓ ଗୋଟିଏ ରାତି ସେପରି କଷ୍ଟ ଭୋଗିବାକୁ ପଡ଼ିଲା; କିନ୍ତୁ ମୁନି ସମାଧିସ୍ଥ ଥିବା ଯୋଗୁଁ ଶୂଳାଘାତଜନିତ ବେଦନା ଆଦୌ ଅନୁଭବ କଲେ ନାହିଁ । ଏହିପରି ପତିବ୍ରତାଙ୍କ ସ୍ୱାମୀ ମଧ୍ୟ ପୂର୍ବଜନ୍ମରେ ଜଣେ କୁଷ୍ଠରୋଗଗ୍ରସ୍ତ ବ୍ରାହ୍ମଣଙ୍କୁ ବଧ କରିଥିଲେ ; ତେଣୁ ତାଙ୍କ ଶରୀରରେ ଦୁର୍ଗନ୍ଧମୟ କୁଷ୍ଠରୋଗ ଉତ୍ପନ୍ନ ହୋଇଯାଇଥିଲା; କିନ୍ତୁ ସେ ବ୍ରାହ୍ମଣଙ୍କୁ ଚାରୋଟି ଗୌରୀଦାନ ଓ ତିନୋଟି କନ୍ୟାଦାନ କରିଥିଲେ; ତେଣୁ ତାଙ୍କ ସ୍ତ୍ରୀ ପତିବ୍ରତା ହେଲେ । ସେହି ପତ୍ନୀଙ୍କ କାରଣରୁ ହିଁ ସେ ମୋର ସମାନତା ପ୍ରାପ୍ତ ହେଲେ ।''

**ବ୍ରାହ୍ମଣ କହିଲେ,** ''ହେ ନାଥ ! ଯଦି ପତିବ୍ରତାଙ୍କର ଏପରି ମହିମା ଥାଏ, ତେବେ ଯେଉଁ ପୁରୁଷଙ୍କର ସ୍ତ୍ରୀ ବ୍ୟଭିଚାରିଣୀ ନୁହେଁ, ସେ ତ ନିଶ୍ଚୟ ସ୍ୱର୍ଗଲାଭ କରିବେ । ସତୀ ସ୍ତ୍ରୀ ହେତୁ ସମସ୍ତଙ୍କର ମଙ୍ଗଳ ହେବା ଉଚିତ ।''

**ଭଗବାନ୍ କହିଲେ,** ''ଠିକ୍ କଥା । ସଂସାରରେ କେତେକ ସ୍ତ୍ରୀ ଏପରି କୁଳଟା ହୁଅନ୍ତି ଯେ, ସେମାନେ ତାକୁ ସର୍ବସ୍ୱ ଅର୍ପଣ କରିଥିବା ପୁରୁଷର ଶତ୍ରୁତା କରନ୍ତି । ସେମାନଙ୍କ ମଧ୍ୟରେ ଯେ ସର୍ବଦା ଅରକ୍ଷଣୀୟା – ଯାହାକୁ ଦୁରାଚାରରୁ ରକ୍ଷା କରିବା ଅସମ୍ଭବ, ସେପରି ସ୍ତ୍ରୀକୁ ତ ମନରେ

ବି ସ୍ୱୀକାର କରିବା ଅନୁଚିତ । ଯେଉଁ ନାରୀ କାମବଶୀଭୂତ ହୋଇଯାଏ, ସେ ନିର୍ଧନ, କୁରୂପ, ଗୁଣହୀନ ତଥା ନୀଚକୁଳର ଚାକରକୁ ମଧ୍ୟ ସ୍ୱୀକାର କରିନିଏ, ମୃତ୍ୟୁ ପର୍ଯ୍ୟନ୍ତ ସମ୍ପର୍କ ଯୋଡ଼ିବାରେ ତାକୁ ଅସୁବିଧା ହୁଏ ନାହିଁ । ସେ ଗୁଣବାନ୍, କୁଳୀନ, ଧନୀ, ସୁନ୍ଦର ଓ ରତିକଳାରେ କୁଶଳ ସ୍ୱାମୀକୁ ପରିତ୍ୟାଗ କରି ନୀଚପୁରୁଷକୁ ଗ୍ରହଣ କରେ । ହେ ବିପ୍ରବର ! ଏ ବିଷୟରେ ଉମା-ନାରଦ-ସମ୍ବାଦ ହିଁ ଦୃଷ୍ଟାନ୍ତ ; କାରଣ ନାରଦ ସ୍ତ୍ରୀମାନଙ୍କର ନାନା ପ୍ରକାର ଚେଷ୍ଟା ଜାଣନ୍ତି । ନାରଦ ମୁନି ସ୍ୱଭାବତଃ ସଂସାରର ପ୍ରତ୍ୟେକ କଥା ଜାଣିବାକୁ ଇଚ୍ଛା ରଖନ୍ତି । ଥରେ ସେ ମନେ ମନେ କିଛି ଭାବି ପର୍ବତମାନଙ୍କ ମଧ୍ୟରେ ଶ୍ରେଷ୍ଠ କୈଳାସଗିରିକୁ ଚାଲିଗଲେ । ସେଠାରେ ସେହି **ମୁନି ପାର୍ବତୀଙ୍କୁ ପ୍ରଣାମ କରି ପଚାରିଲେ,** "ହେ ଦେବି ! ମୁଁ କାମିନୀମାନଙ୍କର ନିନ୍ଦନୀୟ ଚେଷ୍ଟାମାନ ଜାଣିବାକୁ ଚାହୁଁଛି । ମୁଁ ଏ ବିଷୟରେ ସମ୍ପୂର୍ଣ୍ଣ ଅଜ୍ଞ ; ତେଣୁ ବିନୀତଭାବରେ ପଚାରୁଛି, ଆପଣ ମୋତେ ଏହି କଥା କହନ୍ତୁ ।"

**ପାର୍ବତୀ କହିଲେ,** "ହେ ନାରଦ ! ଯୁବତୀସ୍ତ୍ରୀମାନଙ୍କ ଚିତ୍ତ ସର୍ବଦା ପୁରୁଷମାନଙ୍କ ଠାରେ ହିଁ ଲାଗିରହେ ; ଏଥିରେ ଟିକିଏ ବି ସନ୍ଦେହ ନାହିଁ । ନାରୀ ହେଉଛି ଘିଅପୂର୍ଣ୍ଣପାତ୍ର ସମାନ ଓ ପୁରୁଷ ଜଳୁଥିବା ଅଗ୍ନି ସମାନ ; ତେଣୁ ଘିଅ ଓ ଅଗ୍ନିକୁ ଏକାସ୍ଥାନରେ ରଖିବା ଅନୁଚିତ ।* ଯେପରି ମତ୍ତହସ୍ତୀକୁ ମାହୁନ୍ତ ଅଙ୍କୁଶ ଓ ମୁଦ୍‌ଗର ସାହାଯ୍ୟରେ ନିଜବଶରେ ରଖେ, ସେହିପରି ସ୍ତ୍ରୀମାନଙ୍କୁ ଦଣ୍ଡବଳରେ ହିଁ ସଂଯତ କରି ରଖାଯାଇପାରେ । ପିଲାଦିନେ ପିତା, ଯୌବନରେ ସ୍ୱାମୀ ଓ ବୃଦ୍ଧାବସ୍ଥାରେ ପୁତ୍ର ନାରୀକୁ ରକ୍ଷା କରେ । ସେମାନଙ୍କୁ କେବେ ସ୍ୱାଧୀନତା ଦେବା ଅନୁଚିତ ।ψ ସୁନ୍ଦରୀ ସ୍ତ୍ରୀକୁ ଯଦି ତାର ଇଚ୍ଛାନୁସାରେ ଛାଡ଼ି ଦିଆଯାଏ, ତା'ହେଲେ ପର-ପୁରୁଷର ଆକର୍ଷଣରେ ଅଧୀରା ହୋଇ ସେ ତାର କଥା ଅନୁସାରେ ବ୍ୟଭିଚାରରେ ପ୍ରବୃତ୍ତ ହୁଏ । ଯେପରି ପ୍ରସ୍ତୁତ ହୋଇଥିବା ଖାଦ୍ୟ ଉପରେ ଦୃଷ୍ଟି ନ

* ଘୃତକୁମ୍ଭସମା ନାରୀ ତପ୍ତାଙ୍ଗାରସମଃ ପୁମାନ୍ । ତସ୍ମାଦ୍ ଘୃତଂ ଚ ବହ୍ନିଂ ଚ ହ୍ୟେକସ୍ଥାନେ ନ ଧାରୟେତ୍ ॥
(ପଦ୍ମ ପୁ., ସୃଷ୍ଟି ଖ.୪୯/୨୧)

ψ ପିତା ରକ୍ଷତି କୌମାରେ ଭର୍ତା ରକ୍ଷତି ଯୌବନେ । ପୁତ୍ରାଶ୍ଚ ସ୍ଥାବିରେ ଭାବେ ନ ସ୍ତ୍ରୀ ସ୍ୱାତନ୍ତ୍ର୍ୟମର୍ହତି ॥
(ପଦ୍ମ ପୁ., ସୃଷ୍ଟି ଖ.୪୯/୨୩)

ରଖିଲେ, ତାହା କୁଆ ଓ କୁକୁର ଖାଇଯାଆନ୍ତି, ଯୁବତୀ ସେହିପରି ସ୍ୱଚ୍ଛନ୍ଦ ହେବାଦ୍ୱାରା ବ୍ୟଭିଚାରିଣୀ ହୋଇଯାଏ । ପୁଣି ସେହି କୁଳଟାର ସଂସର୍ଗରେ ସାରା କୁଳ ଦୂଷିତ ହୋଇଯାଏ । ପରବୀଜରୁ ଉତ୍ପନ୍ନ ହୋଇଥିବା ମନୁଷ୍ୟ ବର୍ଣ୍ଣସଙ୍କର ବୋଲାଏ ।* ସଦାଚାରିଣୀ ସ୍ତ୍ରୀ ପିତୃକୁଳ ଓ ପତିକୁଳ–ଦୁଇକୁଳର ସମ୍ମାନ ବଢ଼ାଇ ସେମାନଙ୍କୁ ସମ୍ମାନିତ କରି ରଖେ । ସାଧ୍ୱୀ ନାରୀ ନିଜ କୁଳର ଉଦ୍ଧାର କରେ ଏବଂ ଦୁରାଚାରିଣୀ କୁଳକୁ ନରକରେ ପକାଏ । କୁହାଯାଏ, ସଂସାରରେ ସ୍ୱର୍ଗ, କୁଳ, କଳଙ୍କ, ଯଶ-ଅପଯଶ, ପୁତ୍ର-ପୁତ୍ରୀ ଓ ମିତ୍ରାଦି ସ୍ତ୍ରୀ ଅଧୀନରେ ଥାଏ । ତେଣୁ ବିଦ୍ୱାନ୍ ପୁରୁଷ ସନ୍ତାନପ୍ରାପ୍ତି ଇଚ୍ଛାରେ ବିବାହ କରନ୍ତି । ଯେଉଁ ପାପୀପୁରୁଷ ମୋହବଶରୁ କୌଣସି ସାଧ୍ୱୀ ସ୍ତ୍ରୀକୁ ଦୂଷିତ କରି ଛାଡ଼େ, ସେ ସେହି ସ୍ତ୍ରୀହତ୍ୟାର ପାପ ଭୋଗି ନରକରେ ପଡ଼େ । ଯେ ପରସ୍ତ୍ରୀ ସହିତ ବଳାତ୍କାର କରେ ଅଥବା ତାକୁ ଧନଲାଳସା ଦେଖାଇ ଆୟତ୍ତ କରେ, ତାକୁ ଏହି ସଂସାରରେ ସ୍ତ୍ରୀହତ୍ୟାକାରୀ କୁହାଯାଏ ଏବଂ ମରିବା ପରେ ସେ ଘୋର ନରକରେ ପଡ଼େ । ପରସ୍ତ୍ରୀକୁ ଅପହରଣ କରିଥିବା ମନୁଷ୍ୟ ଚଣ୍ଡାଳକୁଳରେ ଜନ୍ମ ହୁଏ । ସେହିପରି ସ୍ୱାମୀ ସହିତ ପ୍ରତାରଣା କରିଥିବା ସ୍ତ୍ରୀ ଚିରକାଳ ପାଇଁ ନରକ ଭୋଗ କରି କାକଯୋନିରେ ଜନ୍ମ ନିଏ ଓ ଉଚ୍ଛିଷ୍ଟ ଏବଂ ଦୁର୍ଗନ୍ଧଯୁକ୍ତ ପଦାର୍ଥ ଖାଇ ଜୀବନ ବିତାଏ । ତା'ପରେ ମନୁଷ୍ୟ ଜନ୍ମ ନେଇ ବିଧବା ହୁଏ । ଯେ ମାତା, ଗୁରୁପତ୍ନୀ, ବ୍ରାହ୍ମଣୀ, ରାଜାଙ୍କ ରାଣୀ ବା ଅନ୍ୟ କୌଣସି ପ୍ରଭୁ-ପତ୍ନୀ ସହିତ ସମ୍ଭୋଗ କରେ, ସେ ଅକ୍ଷୟ ନରକରେ ପଡ଼େ । ଭଉଣୀ, ଭଣଜାର ସ୍ତ୍ରୀ, ଝିଅ, ପୁଅର ସ୍ତ୍ରୀ, ଖୁଡ଼ୀ, ମାଇଁ, ପିଉସୀ ତଥା ମାଉସୀ ଆଦି ଅନ୍ୟାନ୍ୟ ସ୍ତ୍ରୀମାନଙ୍କ ସହିତ ସମ୍ଭୋଗ କଲେ ମଧ୍ୟ ନରକରୁ ଉଦ୍ଧାର ମିଳେ ନାହିଁ । ଏତିକି ନୁହେଁ, ତାକୁ ବ୍ରହ୍ମହତ୍ୟାର ପାପ ମଧ୍ୟ ଲାଗେ ତଥା ସେ ଅନ୍ଧ, ମୂକ ଓ ବଧିର ହୋଇ ନିରନ୍ତର ତଳକୁ ଖସେ; ସେହି ଅଧଃପତନରୁ ସେ କେବେ ରକ୍ଷା ପାଇପାରେ ନାହିଁ ।”

---

* ଅରକ୍ଷଣାଦ୍ୟଥା ପାକଃ ଶ୍ୱକାକବଶଗୋ ବସେତ୍ । ତଥୈବ ଯୁବତୀ ନାରୀ ସ୍ୱଚ୍ଛନ୍ଦାଦ୍ଦୁଷ୍ଟତାଂ ବ୍ରଜେତ୍॥
ପୁନରେବ କୁଳଂ ଦୁଷ୍ଟଂ ତସ୍ୟାଃ ସଂସର୍ଗତୋ ଭବେତ୍ । ପରବୀଜେ ନରୋ ଜାତଃ ସ ଚ ସ୍ୟାଦ୍ୱର୍ଣ୍ଣସଂକରଃ॥
(ପଦ୍ମ ପୁ., ସୃଷ୍ଟି ଖ.୪୯/୨୫-୨୬)

**ବ୍ରାହ୍ମଣ ପଚାରିଲେ,** "ହେ ଭଗବନ୍ ! ଏହି ପାପରୁ ମନୁଷ୍ୟ କିପରି ଉଦ୍ଧାର ହୋଇଥାଏ ?

**ଶ୍ରୀଭଗବାନ୍ କହିଲେ,** "ଉପରୋକ୍ତ ସ୍ତ୍ରୀମାନଙ୍କ ସହିତ ସମ୍ଭୋଗକାରୀ ପୁରୁଷ ଲୁହାର ସ୍ତ୍ରୀ-ପ୍ରତିମା ତିଆରି କରି, ତାକୁ ନିଆଁରେ ଖୁବ୍ ଗରମ କରି, ପୁଣି ତାକୁ ଗାଢ଼ ଆଲିଙ୍ଗନ କରି ପ୍ରାଣତ୍ୟାଗ କରୁ ଓ ଶୁଦ୍ଧ ହୋଇ ପରଲୋକକୁ ଯାତ୍ରା କରୁ । ଯେଉଁ ମନୁଷ୍ୟ ଗୃହସ୍ଥାଶ୍ରମ ପରିତ୍ୟାଗ କରି ମୋଠାରେ ମନ ଲଗାଏ ଓ ପ୍ରତିଦିନ ମୋର 'ଗୋବିନ୍ଦ' ନାମ ସ୍ମରଣ କରେ, ତାର ସବୁ ପାପ ନାଶ ହୋଇଯାଏ । ସେ କରିଥିବା ହଜାର-ହଜାର ବ୍ରହ୍ମହତ୍ୟା, ଶହ-ଶହ ଥର ଗୁରୁପତ୍ନୀ ସମ୍ଭୋଗ, ଲକ୍ଷେ ଥର ପୈଷ୍ଟୀ ମଦିରା ସେବନ, ସୁବର୍ଣ୍ଣ ଚୋରି, ପାପୀମାନଙ୍କ ସହ ଚିରକାଳ ସଂପର୍କ ରଖିବା – ଏସବୁ ତଥା ଆହୁରି ଯେତେ ବଡ଼-ବଡ଼ ପାପ ଅଛି, ମୋ ନାମ ନେଲେ ସେହିସବୁ ପାପ, ଅଗ୍ନି ପାଖରେ ପହଞ୍ଚିଗଲେ ତୁଳାଗଦା ଯେପରି ଜଳିଯାଏ, ତତ୍କାଳ ସେହିପରି ନାଶ ହୋଇଯାଏ । ମୋର ଗୋବିନ୍ଦ ନାମ ସ୍ମରଣ କରି ପବିତ୍ର ହୋଇଯିବା ଉଚିତ । (କିନ୍ତୁ ଯେ ନାମ ଭରସାରେ ପାପ କରେ, ନାମ ତାକୁ କେବେ ରକ୍ଷା କରେ ନାହିଁ ।) ଯେ ପ୍ରତିଦିନ ମୋର ଗୋବିନ୍ଦ ନାମ କୀର୍ତ୍ତନ ଓ ପୂଜା କରି ଗୃହସ୍ଥାଶ୍ରମରେ ନିବାସ କରେ, ସେ ପାପରୁ ତରିଯାଏ । ହେ ତାତ ! ଗଙ୍ଗାର ରମଣୀୟ ତଟରେ ଚନ୍ଦ୍ରଗ୍ରହଣର ମଙ୍ଗଳମୟୀ ବେଳାରେ କୋଟିଏ ଗୋଦାନ କଲେ ମନୁଷ୍ୟକୁ ଯେଉଁ ଫଳ ମିଳେ, 'ଗୋବିନ୍ଦ' ନାମ କୀର୍ତ୍ତନ କଲେ ତା'ଠାରୁ ହଜାରେ ଗୁଣ ଅଧିକ ଫଳ ମିଳେ । କୀର୍ତ୍ତନ କରୁଥିବା ମନୁଷ୍ୟ ମୋର ବୈକୁଣ୍ଠଧାମରେ ସଦା ନିବାସ କରେ ।* ପୁରାଣମାନଙ୍କରେ ଥିବା ମୋ କଥା ଶୁଣିଲେ

---

* ଯୋ ବୈ ଗୃହାଶ୍ରମଂ ତ୍ୟକ୍ତ୍ୱା ମଚ୍ଚିତ୍ତୋ ଜାୟତେ ନରଃ । ନିତ୍ୟଂ ସ୍ମରତି ଗୋବିନ୍ଦଂ ସର୍ବପାପକ୍ଷୟୋ ଭବେତ୍ ॥
ବ୍ରହ୍ମହତ୍ୟାୟୁତଂ ତେନ କୃତଂ ଗୁର୍ବଙ୍ଗନାଗମଃ । ଶତଂ ଶତସହସ୍ରଂ ଚ ପୈଷ୍ଟୀମଦ୍ୟସ୍ୟ ଭକ୍ଷଣମ୍॥
ସ୍ୱର୍ଣ୍ଣାଦେର୍ହରଣଂ ଚୈବ ତେଷାଂ ସଂସର୍ଗକଶ୍ଚିରମ୍ । ଏତାନ୍ୟନ୍ୟାନି ପାପାନି ମହାନ୍ତି ପାତକାନି ଚ ॥
ଅଗ୍ନିଂ ପ୍ରାପ୍ୟ ଯଥା ତୂଳଂ ତୃଣମାଶୁ ପ୍ରଣଶ୍ୟତି । ତସ୍ମାନ୍ନାମ ଗୋବିନ୍ଦ ସ୍ମୃତ୍ୱା ପୂତୋ ଭବେନ୍ନରଃ॥
ଯୋ ବା ଗୃହାଶ୍ରମେ ତିଷ୍ଠେନ୍ନିତ୍ୟଂ ଗୋବିନ୍ଦ ଘୋଷଣମ୍। କୃତ୍ୱା ଚ ପୂଜୟିତ୍ୱା ଚ ସ ପାପାନ୍ସଂତରୋ ଭବେତ୍॥
ଭାଗୀରଥୀତଟେ ରମ୍ୟେ ଖଗସ୍ୟ ଗ୍ରହଣେ ଶିବେ। ଗବାଂ କୋଟିପ୍ରଦାନେନ ଯତ୍ଫଳଂ ଲଭତେ ନରଃ॥
ତତ୍ଫଳଂ ସମବାପ୍ନୋତି ସହସ୍ରଂ ଗ୍ୱଧିକଂ ଚ ଯତ୍। ଗୋବିନ୍ଦକୀର୍ତନେ ତାତ ମତ୍ପୁରେ ଗ୍ୱକ୍ଷୟଂ ବସେତ୍॥
(ପଦ୍ମ ପୁ.ସୃଷ୍ଟି ଖ.୪୯/୫୦-୫୬)

ମନୁଷ୍ୟ ମୋର ସମାନତା ପ୍ରାପ୍ତ ହୁଏ । ଯେ ପୁରାଣ କଥା ଶୁଣାନ୍ତି, ତାଙ୍କୁ ମୋର ସାନ୍ନିଧ୍ୟ ପ୍ରାପ୍ତ ହୁଏ; ଏଣୁ ପ୍ରତିଦିନ ପୁରାଣ ପଢ଼ିବା ଉଚିତ । ପୁରାଣ ହେଉଛି ଧର୍ମମାନଙ୍କର ସଂଗ୍ରହ ।

"ହେ ବିପ୍ରବର ! ଏବେ ମୁଁ ସତୀ ସ୍ତ୍ରୀମାନଙ୍କ ମଧ୍ୟରେ ଯେଉଁ ଅତି ଉତ୍କୃଷ୍ଟ ଗୁଣ ଥାଏ, ତାହା ବର୍ଣ୍ଣନା କରୁଛି, ଶୁଣ । ସତୀ ସ୍ତ୍ରୀର ବଂଶ ପବିତ୍ର ହୋଇଯାଏ । ସେଠାରେ ସର୍ବଦା ଲକ୍ଷ୍ମୀ ନିବାସ କରନ୍ତି । ସତୀର ପିତୃକୁଳ ଓ ପତିକୁଳ—ଦୁଇକୁଳକୁ ତଥା ତାର ସ୍ୱାମୀକୁ ସ୍ୱର୍ଗଲୋକ ପ୍ରାପ୍ତି ହୁଏ । ଯେଉଁ ସ୍ତ୍ରୀମାନେ ନିଜ ଜୀବନର ପୂର୍ବକାଳ ପାପ-ପୁଣ୍ୟ ମିଶ୍ରିତ କର୍ମରେ ବିତାଇ ପରେ ପତିବ୍ରତା ହୋଇଥାନ୍ତି, ତାଙ୍କୁ ବି ମୋ ଲୋକ ପ୍ରାପ୍ତି ହୋଇଯାଏ । ଯେଉଁ ସ୍ତ୍ରୀ ନିଜ ସ୍ୱାମୀର ଅନୁଗମନ କରେ, ସେ ମଦ୍ୟପ, ବ୍ରହ୍ମହତ୍ୟାକାରୀ ତଥା ସବୁପ୍ରକାର ପାପମାନଙ୍କରେ ପୂର୍ଣ୍ଣ ସ୍ୱାମୀକୁ ପାପମୁକ୍ତ କରି ନିଜ ସହିତ ସ୍ୱର୍ଗକୁ ନେଇଯାଏ । ଯେ ମରିଥିବା ସ୍ୱାମୀ ସହିତ ପ୍ରାଣତ୍ୟାଗ କରେ, ତାର ସ୍ୱର୍ଗପ୍ରାପ୍ତି ନିଶ୍ଚିତ । ଯେଉଁ ନାରୀ ସ୍ୱାମୀକୁ ଅନୁଗମନ କରେ, ସେ ମନୁଷ୍ୟ ଶରୀରରେ ଯେତେ (ସାଢ଼େ ତିନିକୋଟି) ଲୋମ ଥାଏ, ସେତେବର୍ଷ ପର୍ଯ୍ୟନ୍ତ ସ୍ୱର୍ଗରେ ନିବାସ କରେ । ଯଦି ସ୍ୱାମୀର ମୃତ୍ୟୁ ଦୂରରେ କେଉଁଠି ହୋଇଯାଏ, ତା'ହେଲେ ତାର କୌଣସି ଚିହ୍ନ ପାଇ ଯେଉଁ ସ୍ତ୍ରୀ ପ୍ରାଣତ୍ୟାଗ କରେ, ସେ ନିଜ ସ୍ୱାମୀଙ୍କୁ ପାପରୁ ଉଦ୍ଧାର କରିଦିଏ । ପତିବ୍ରତା ସ୍ତ୍ରୀଙ୍କର ସ୍ୱାମୀ ଯଦି ପରଦେଶରେ ମରିଯାଏ, ତାହେଲେ ସେହି ସ୍ତ୍ରୀ ସ୍ୱାମୀର କୌଣସି ଚିହ୍ନ ପ୍ରାପ୍ତ କରି ଓ ତାହା ନେଇ ସ୍ୱର୍ଗଲୋକକୁ ଯାତ୍ରା କରିବା ଉଚିତ । ଯଦି ବ୍ରାହ୍ମଣଜାତିର ସ୍ତ୍ରୀ ମୃତସ୍ୱାମୀ ସହିତ ଚିତାରେ ପ୍ରବେଶ କରେ, ତେବେ ତାକୁ ଆତ୍ମହତ୍ୟା ଦୋଷ ଲାଗେ ; ତା'ଫଳରେ ସେ ନିଜକୁ ଓ ନିଜ ସ୍ୱାମୀଙ୍କୁ ସ୍ୱର୍ଗରେ ପହଞ୍ଚାଇପାରେ ନାହିଁ । ଏଣୁ ବ୍ରାହ୍ମଣ ଜାତିର ସ୍ତ୍ରୀ ନିଜର ମୃତସ୍ୱାମୀଙ୍କ ସହିତ ନ ମରୁ—ଏହା ବ୍ରହ୍ମାଙ୍କର ଆଜ୍ଞା । ବ୍ରାହ୍ମଣୀ ବିଧବା ବୈଧବ୍ୟ-ବ୍ରତ ଆଚରଣ କରିବା ଉଚିତ । ଯେଉଁ ବିଧବା ଏକାଦଶୀ ବ୍ରତ ପାଳେ ନାହିଁ, ସେ ପରଜନ୍ମରେ ମଧ୍ୟ ବିଧବା ହୋଇଥାଏ, ତଥା ପ୍ରତ୍ୟେକ ଜନ୍ମରେ ଦୁର୍ଭାଗ୍ୟରେ ପୀଡ଼ିତ ହୁଏ । ମାଛ-ମାଂସ ଖାଇବା ତଥା ବ୍ରତ ନ କରିବା ଫଳରେ ସେ ଚିରକାଳ

ନରକରେ ରହି କୁକୁରଯୋନିରେ ଜନ୍ମ ନିଏ । ଯେଉଁ କୁଳନାଶିନୀ ବିଧବା ଦୁରାଗ୍ରହିଣୀ ହୋଇ ମୈଥୁନ କରାଏ, ସେ ନରକଯାତନା ଭୋଗିବା ପରେ ଦଶଜନ୍ମ ପର୍ଯ୍ୟନ୍ତ ଶାଗୁଣା ହୁଏ; ପୁଣି ଦୁଇଜନ୍ମ ପର୍ଯ୍ୟନ୍ତ ଶୃଗାଳ ହୋଇ ପରେ ମନୁଷ୍ୟ ଯୋନିରେ ଜନ୍ମ ନିଏ । ସେଥିରେ ବି ବାଲ୍ୟବିଧବା ହୋଇ ଦାସୀଜୀବନ ପ୍ରାପ୍ତ ହୋଇଥାଏ ।''

**ବ୍ରାହ୍ମଣ କହିଲେ,** ''ହେ ଭଗବନ୍ ! ଯଦି ଆପଣଙ୍କର ମୋ ଉପରେ ଅନୁଗ୍ରହ ଅଛି, ତାହେଲେ ଏବେ କନ୍ୟାଦାନର ଫଳ ବର୍ଣ୍ଣନା କରନ୍ତୁ । ତା' ସହିତ ତାର ଯଥାର୍ଥ ବିଧି ମଧ୍ୟ କହନ୍ତୁ ।''

**ଶ୍ରୀଭଗବାନ୍ କହିଲେ,** ''ହେ ବ୍ରହ୍ମନ୍ ! ରୂପବାନ୍, ଗୁଣବାନ୍, କୁଳୀନ, ତରୁଣ, ସମୃଦ୍ଧିଶାଳୀ ଓ ଧନ-ଧାନ୍ୟରେ ସମ୍ପନ୍ନ ବରକୁ କନ୍ୟାଦାନ କଲେ ଯେଉଁ ଫଳ ମିଳେ, ତାହା ଶୁଣ । ଆଭୂଷଣଯୁକ୍ତ କନ୍ୟା ଦାନ କଲେ, ତା'ଦ୍ୱାରା ପର୍ବତ, ବନ ଓ କାନନମାନଙ୍କ ସହିତ ସାରା ପୃଥିବୀର ଦାନ ମଧ୍ୟ ହୋଇଯାଏ । ଯେଉଁ ପିତା କନ୍ୟାର ଶୁଳ୍କ ନେଇଯାଏ, ସେ ନରକରେ ପଡ଼େ । ଯେଉଁ ମୂର୍ଖ ନିଜ ଝିଅକୁ ବିକିଦିଏ, ତାର କେବେ ନରକରୁ ଉଦ୍ଧାର ହୁଏ ନାହିଁ । ଯେ ଲୋଭବଶ ହୋଇ ଅଯୋଗ୍ୟ ପୁରୁଷକୁ କନ୍ୟାଦାନ କରେ, ସେ ରୌରବ ନରକରେ ପଡ଼ି ଶେଷରେ ଚଣ୍ଡାଳ ହୋଇଯାଏ ।* ତେଣୁ ବିଦ୍ୱାନ୍ ପୁରୁଷ ଜ୍ୱାଇଁଠାରୁ ଶୁଳ୍କ ନେବାର ବିଚାର କେବେ ବି ମନରେ ଆଣନ୍ତି ନାହିଁ । ନିଜପକ୍ଷରୁ ଜ୍ୱାଇଁଙ୍କୁ ଯାହା ଦିଆଯାଏ, ତାହା ଅକ୍ଷୟ ହୋଇଯାଏ । ପୃଥିବୀ, ଗାଈ, ସୁନା, ଧନ-ଧାନ୍ୟ ଓ ବସ୍ତ୍ରାଦି ଯାହା କିଛି ଜ୍ୱାଇଁଙ୍କୁ ଯୌତୁକ ଆକାରରେ ଦିଆଯାଏ, ତାହା ଅକ୍ଷୟ ଫଳ ପ୍ରଦାନକାରୀ ହୋଇଥାଏ । ଛିଣ୍ଡାଦଉଡ଼ି ଯେପରି ମାଠିଆ ସହିତ ନିଜେ ମଧ୍ୟ କୂଅରେ ବୁଡ଼ିଯାଏ, ଯଦି ଦାତା ସଂକଳ୍ପ କରିଥିବା ଦାନକଥା ଭୁଲିଯାଏ ଏବଂ ଦାନ ଗ୍ରହଣକାରୀ ପୁରୁଷ ତାହା ମନେ ପକାଇଦେଇ ମାଗେ ନାହିଁ, ତାହାହେଲେ ସେ ଉଭୟେ ସେହିପରି ନରକରେ ପଡ଼ନ୍ତି ।

* ଯଃ ପୁନଃ ଶୁଳ୍କମଶ୍ନାତି ସ ଯାତି ନରକଂ ନରଃ । ବିକ୍ରୀତ୍ୱା ଚ୍ଚଆତ୍ମଜାଂ ମୂଢୋ ନରକାନ୍ନ ନିବର୍ତ୍ତତେ॥
ଲୋଭାଦସଦୃଶେ ପୁଂସି କନ୍ୟାଂ ଯସ୍ତୁ ପ୍ରଯଚ୍ଛତି । ରୌରବଂ ନରକଂ ପ୍ରାପ୍ୟ ଚଣ୍ଡାଳତ୍ୱଂ ଚ ଗଚ୍ଛତି॥
(ପଦ୍ମ ପୁ.ସୃଷ୍ଟି ଖ. ୪୯/୯୦-୯୧)

ସାତ୍ତ୍ୱିକ ପୁରୁଷ ଦ୍ୱାଇଁଙ୍କୁ ଯୌତୁକରେ ଦେବାପାଇଁ ନିଶ୍ଚୟ କରିଥିବା ସବୁବସ୍ତୁ ଅବଶ୍ୟ ଦେଇଦେବା ଉଚିତ । ନ ଦେଲେ ପ୍ରଥମେ ତ ସେ ନରକରେ ପଡ଼େ ; ପୁଣି ଯୌତୁକ ଗ୍ରହଣକାରୀର ଦାସରୂପରେ ଜନ୍ମଗ୍ରହଣ କରେ ।

ଯେ ବହୁତ ଖାଏ, ଅଧିକ ଦୂରରେ ରହେ, ଅତ୍ୟଧିକ ଧନୀ, ଯେ ଅଧିକ ଦୁଷ୍ଟ, ଯାହାର କୁଳ ଉତ୍ତମ ନୁହେଁ ତଥା ଯେ ମୂର୍ଖ– ଏହି ଛଅ ପ୍ରକାର ପୁରୁଷଙ୍କୁ କନ୍ୟାଦାନ କରିବା ଉଚିତ ନୁହେଁ । ସେହିପରି ଅତିବୃଦ୍ଧ, ଅତି ଗରିବ, ରୋଗୀ, ଅତି ନିକଟର ବାସିନ୍ଦା, ଅତି ରାଗୀ ଓ ଅସନ୍ତୁଷ୍ଟ – ଏହି ଛଅପ୍ରକାର ବ୍ୟକ୍ତିଙ୍କୁ ମଧ୍ୟ କନ୍ୟାଦାନ କରିବା ଉଚିତ ନୁହେଁ । ଏମାନଙ୍କୁ କନ୍ୟା ଦେଲେ ମନୁଷ୍ୟ ନରକରେ ପଡ଼େ । ଧନ-ପ୍ରାପ୍ତି ବା ସମ୍ମାନ ମିଳିବା ଆଶାରେ ଯେ କନ୍ୟା ଦାନ କରେ, ବା ଗୋଟିଏ କନ୍ୟା ଦେଖାଇ ଅନ୍ୟ କନ୍ୟା ଦାନ କରେ, ସେ ମଧ୍ୟ ନରକଗାମୀ ହୁଏ । ଯେ ପ୍ରତିଦିନ ଏହି ପରମ ପୁଣ୍ୟମୟ ଉପାଖ୍ୟାନ ଶ୍ରବଣ କରେ, ତା'ର ବହୁ ଜନ୍ମର ପାପ ନଷ୍ଟ ହୋଇଯାଏ ।



## ତୁଳାଧାରଙ୍କ ସତ୍ୟ ଓ ସମତ୍ୱଭାବର ପ୍ରଶଂସା, ସତ୍ୟଭାଷଣର ମହିମା, ଲୋଭ-ତ୍ୟାଗ ବିଷୟରେ ଜଣେ ଶୂଦ୍ରର କଥା ଓ ମୂକ ଚଣ୍ଡାଳ ଆଦିଙ୍କ ପରମ ଧାମଗମନ

**ବ୍ରାହ୍ମଣ କହିଲେ,** ''ପ୍ରଭୋ ! ଯଦି ମୋ ଉପରେ ଆପଣଙ୍କର କୃପା ହୁଏ, ତା'ହେଲେ ତୁଳାଧାରଙ୍କ ଚରିତ୍ର ଓ ଅନୁପମ ପ୍ରଭାବର ସମ୍ପୂର୍ଣ୍ଣ ବର୍ଣ୍ଣନା କରନ୍ତୁ ।''

**ଶ୍ରୀଭଗବାନ୍ କହିଲେ,** ''ଯେ ସତ୍ୟ ପାଳନ କରି, ଲୋଭ ଓ ଦୋଷବୁଦ୍ଧି ତ୍ୟାଗ କରି ପ୍ରତିଦିନ କିଛି ଦାନ କରନ୍ତି, ତାଙ୍କ ଦ୍ୱାରା ପ୍ରତିଦିନ

ଉତ୍ତମ ଦକ୍ଷିଣାଯୁକ୍ତ ଶହ ଶହ ଯଜ୍ଞାନୁଷ୍ଠାନ ହେଉଛି ବୋଲି ଜାଣ । ସତ୍ୟ ରକ୍ଷି ସୂର୍ଯ୍ୟ ଉଦୟ ହୁଅନ୍ତି; ସତ୍ୟ ଦ୍ୱାରା ବାୟୁ ପ୍ରବାହିତ ହୁଏ; ସତ୍ୟର ପ୍ରଭାବରେ ହିଁ ସମୁଦ୍ର ନିଜ ମର୍ଯ୍ୟାଦା ଉଲ୍ଲଘଂନ କରେ ନାହିଁ ଓ କୂର୍ମ ଭଗବାନ୍ ଏହି ପୃଥିବୀକୁ ନିଜ ପିଠିରେ ଧାରଣ କରି ରହିଛନ୍ତି । ସତ୍ୟଦ୍ୱାରା ହିଁ ତିନି ଲୋକ ଓ ସମସ୍ତ ପର୍ବତ ସ୍ଥିର ରହିଛନ୍ତି । ଯେ ସତ୍ୟଭ୍ରଷ୍ଟ ହୁଏ, ସେହି ପ୍ରାଣୀକୁ ନିଶ୍ଚୟ ନରକରେ ବାସ କରିବାକୁ ପଡ଼େ । ଯେ ସତ୍ୟବାଦୀ ଓ ସତ୍ୟରେ ସର୍ବଦା ସଂଲଗ୍ନ ରହନ୍ତି, ସେ ଇହଶରୀରରେ ଭଗବାନଙ୍କ ଧାମକୁ ଯାଇ ଭଗବତସ୍ୱରୂପ ହୋଇଥାନ୍ତି । ସତ୍ୟଦ୍ୱାରା ହିଁ ସମସ୍ତ ଋଷି-ମୁନି ମୋତେ ପ୍ରାପ୍ତ ହୋଇ, ଶାଶ୍ୱତ ଗତି ପାଇ ସ୍ଥିର ଅଛନ୍ତି; ସତ୍ୟଦ୍ୱାରା ହିଁ ରାଜା ଯୁଧିଷ୍ଠିର ସ୍ୱଶରୀରରେ ସ୍ୱର୍ଗକୁ ଚାଲିଗଲେ ।* ସେ ସମସ୍ତ ଶତ୍ରୁଙ୍କୁ ଜୟ କରି ଧର୍ମାନୁସାରେ ସଂସାର ପାଳନ କଲେ । ଅତ୍ୟନ୍ତ ଦୁର୍ଲଭ ଏବଂ ବିଶୁଦ୍ଧ ରାଜସୂୟ ଯଜ୍ଞ ଅନୁଷ୍ଠାନ କଲେ । ସେ ପ୍ରତିଦିନ ଚୌରାଅଶୀ ହଜାର ବ୍ରାହ୍ମଣଙ୍କୁ ଭୋଜନ କରାଉଥିଲେ ଓ ସେମାନଙ୍କ ଇଚ୍ଛାନୁସାରେ ପର୍ଯ୍ୟାପ୍ତ ଧନ ଦାନ କରୁଥିଲେ । ଯେତେବେଳେ ସେ ଜାଣିପାରୁଥିଲେ ଯେ, ସେମାନଙ୍କ ମଧ୍ୟରୁ ପ୍ରତ୍ୟେକ ବ୍ରାହ୍ମଣର ଦାରିଦ୍ର୍ୟ ଦୂର ହୋଇଯାଇଛି, ସେତେବେଳେ ସେହି ବ୍ରାହ୍ମଣସମୁଦାୟକୁ ବିଦାୟ କରୁଥିଲେ । ଏସବୁ ତାଙ୍କ ସତ୍ୟର ପ୍ରଭାବ ଥିଲା । ରାଜା ହରିଶ୍ଚନ୍ଦ୍ର ସତ୍ୟର ଆଶ୍ରୟ ନେଇ ବାହନ, ପରିବାର ତଥା ନିଜର ବିଶୁଦ୍ଧ ଶରୀର ସହିତ ସତ୍ୟଲୋକରେ ପ୍ରତିଷ୍ଠିତ ହୋଇଛନ୍ତି । ଏମାନଙ୍କ ଛଡ଼ା ଆହୁରି ଅନେକ ରାଜା, ସିଦ୍ଧ, ମହର୍ଷି, ଜ୍ଞାନୀ ଓ ଯଜ୍ଞକର୍ତ୍ତା ଅଛନ୍ତି, ଯେଉଁମାନେ କି କେବେ ବି ସତ୍ୟରୁ ବିଚଳିତ ହୋଇ ନ ଥିଲେ । ଏଣୁ ସଂସାରରେ ଯେ ସତ୍ୟପରାୟଣ, ସେ ହିଁ ସଂସାରକୁ ଉଦ୍ଧାର କରିବାକୁ ସମର୍ଥ । ମହାତ୍ମା ତୁଳାଧାର ସତ୍ୟଭାଷଣରେ

---

* ସତ୍ୟେନୋଦୟତେ ସୂର୍ୟୋ ବାତି ବାତସ୍ତଥୈବ ଚ । ନ ଲଂଘୟେତ୍ ସମୁଦ୍ରସ୍ତୁ କୂର୍ମୋ ବା ଧରଣୀଂ ଯଥା ॥
ସତ୍ୟେନ ଲୋକାସ୍ତିଷ୍ଠନ୍ତି ସର୍ବେ ଚ ବସୁଧାଧରାଃ । ସତ୍ୟାଦ୍‌ଭ୍ରଷ୍ଟେଽଥ ଯଃ ସତ୍ତ୍ୱୋଽପ୍ୟଧୋବାସୀଭବେଦ୍‌ଧ୍ରୁବମ୍ ॥
ସତ୍ୟବାଚି ରତୋ ଯସ୍ତୁ ସତ୍ୟକାର୍ଯ୍ୟରତଃ ସଦା । ସଶରୀରେଣ ସ୍ୱର୍ଲୋକମାଗତ୍ୟାଚ୍ୟୁତତାଂ ବ୍ରଜେତ୍ ॥
ସତ୍ୟେନ ମୁନୟଃ ସର୍ବେ ମାଂ ଚ ଗତ୍ୱା ସ୍ଥିରାଃ ସ୍ଥିତାଃ । ସତ୍ୟାଦ୍ ଯୁଧିଷ୍ଠିରୋ ରାଜା ସଶରୀରୋ ଦିବଂ ଗତଃ ॥
(ପଦ୍ମ ପୁ.ସୃଷ୍ଟି ଖ. ୫୦/୩-୬)

ସ୍ଥିର ଥିଲେ । ସତ୍ୟ କହିବା ହେତୁ ହିଁ ଏହି ଜଗତରେ ତାଙ୍କ ସମାନ ଅନ୍ୟ କେହି ନାହାଁନ୍ତି । ଏହି ତୁଳାଧାର କେବେ ମିଥ୍ୟା କହନ୍ତି ନାହିଁ । ମହଙ୍ଗା ଓ ଶସ୍ତା ସବୁପ୍ରକାର ବସ୍ତୁ କିଣା ବିକା କରିବାରେ ସେ ବଡ଼ ବୁଦ୍ଧିମାନ୍ ।

ବିଶେଷତଃ ସାକ୍ଷୀର ସତ୍ୟବଚନକୁ ଉତ୍ତମ ବୋଲି ସ୍ୱୀକାର କରାଯାଇଛି । କେତେକ ସାକ୍ଷୀ ସତକଥା କହି ଅକ୍ଷୟ ସ୍ୱର୍ଗ ପ୍ରାପ୍ତ କରିସାରିଛନ୍ତି । ଯେଉଁ ବକ୍ତା ବିଦ୍ୱାନଙ୍କ ସଭାରେ ପହଞ୍ଚି ସତ୍ୟ କହନ୍ତି, ସେ ଯାହା ଅନ୍ୟାନ୍ୟ ଯଜ୍ଞଦ୍ୱାରା ଦୁର୍ଲଭ, ସେହି ବ୍ରହ୍ମାଙ୍କ ଧାମ ପ୍ରାପ୍ତ ହୋଇଥାନ୍ତି । ଯେ ସଭାରେ ସତ୍ୟଭାଷଣ କରନ୍ତି, ତାଙ୍କୁ ଅଶ୍ୱମେଧ ଯଜ୍ଞର ଫଳ ମିଳେ । ଲୋଭ ଓ ଦ୍ୱେଷବଶତଃ ମିଥ୍ୟା କହିବା ଫଳରେ ମନୁଷ୍ୟ ରୌରବ ନରକରେ ପଡ଼େ । ତୁଳାଧାର ହେଉଛନ୍ତି ସମସ୍ତଙ୍କର ସାକ୍ଷୀ ; ସେ ହିଁ ମନୁଷ୍ୟମାନଙ୍କ ମଧ୍ୟରେ ସାକ୍ଷାତ୍ ସୂର୍ଯ୍ୟ । ବିଶେଷ କଥା ଏହି ଯେ, ଲୋଭ ପରିତ୍ୟାଗ କରିଥିବା ମନୁଷ୍ୟ ସ୍ୱର୍ଗରେ ଦେବତା ହୋଇଥାନ୍ତି ।

ଜଣେ ମହାନ୍ ଭାଗ୍ୟଶାଳୀ ଶୂଦ୍ର ଥିଲେ । ସେ କେବେ ଲୋଭରେ ପଡୁ ନ ଥିଲେ । ସେ ଶାଗ ଖାଇ, ବଜାରର ପଡ଼ିଥିବା ଚାଉଳ ତଥା କ୍ଷେତମାନଙ୍କରେ ପଡ଼ିଥିବା ଧାନ ସଂଗ୍ରହ କରି ସେଥିରେ ବଡ଼ ଦୁଃଖରେ ଜୀବନ ନିର୍ବାହ କରୁଥିଲେ । ତାଙ୍କ ପାଖରେ ଦୁଇଟି ଚିରା-ପୁରୁଣା ଲୁଗା ଥିଲା ଏବଂ ସେ ନିଜ ହାତକୁ ହିଁ ପାତ୍ର କରି କାମ ଚଳାଇ ନେଉଥିଲେ । ତାଙ୍କୁ କେବେ କୌଣସି ବସ୍ତୁ ମିଳୁ ନ ଥିଲା; ତଥାପି ସେ ପରଧନ ଗ୍ରହଣ କରି ନେଉ ନ ଥିଲେ । ତାଙ୍କୁ ପରୀକ୍ଷା କରିବା ପାଇଁ ନିଜେ ମୁଁ ଦୁଇଟି ନୂଆଲୁଗା ନେଇ, ନଦୀତଟରେ ଗୋଟିଏ କୋଣରେ ରଖିଦେଇ ଅନ୍ୟତ୍ର ଲୁଚିରହିଲି । ଶୂଦ୍ର ଜଣକ ସେହି ଦୁଇଟି ବସ୍ତ୍ର ଦେଖି ମଧ୍ୟ ମନରେ ଲୋଭ କଲେ ନାହିଁ ଓ ଆଉ କାହାର ହୋଇଥିବ ଭାବି ଚୁପ୍‌ଚାପ ଘରକୁ ଚାଲିଗଲେ । ମୁଁ ଭାବିଲି, ଏଥିରୁ ବିଶେଷ ଲାଭ ହେବନାହିଁ ଜାଣି, ସେ ସେହି ଲୁଗାଦିଖଣ୍ଡ ନେଇ ନ ଥିବ । ତେଣୁ ମୁଁ ଗୋଟିଏ ଫଳରେ ଖଣ୍ଡିଏ ସୁନା ରଖି, ତାହା ସେଠାରେ ରଖିଦେଲି । ମଗଧପ୍ରଦେଶ, ନଦୀତଟ ଓ ନିର୍ଜନ ସ୍ଥାନ—ଏପରି ଜାଗାରେ ସେ ସେହି ଅଦ୍ଭୁତ ଫଳଟି ଦେଖିଲେ । ତା ଉପରେ ଦୃଷ୍ଟି ପଡ଼ିବା କ୍ଷଣି ସେ କହି ଉଠିଲେ, "ବାସ-ବାସ; ଏହା

କୌଣସି କୃତ୍ରିମ ଉପାୟ ପରି ଦେଖାଯାଉଛି । ଏହି ଫଳଟି ନେଇଗଲେ ମୋର ନିର୍ଲୋଭ ବୃତ୍ତି ନଷ୍ଟ ହୋଇଯିବ । ଧନ ରକ୍ଷା କରିବା ବଡ଼ କଷ୍ଟକର କଥା; ଧନ ହେଉଛି ଅହଂକାରର ସ୍ଥାନ । ଯେତେ ଲାଭ ହୁଏ, ସେତେ ଲୋଭ ବଢ଼େ । ଲାଭରୁ ହିଁ ଲୋଭର ଉତ୍ପତ୍ତି ହୁଏ । ଲୋଭଗ୍ରସ୍ତ ମନୁଷ୍ୟକୁ ସର୍ବଦା ନରକରେ ରହିବାକୁ ପଡ଼େ । ଯଦି ଏହି ଗୁଣହୀନ ଦ୍ରବ୍ୟ ମୋ ଘରେ ରହିବ, ତା' ହେଲେ ମୋ ସ୍ତ୍ରୀ ଓ ପୁତ୍ରମାନେ ଉନ୍ମତ୍ତ ହୋଇଯିବେ । ଉନ୍ମାଦ ହେଉଛି କାମଜନିତ ବିକାର । ତଦ୍ଦ୍ୱାରା ବୁଦ୍ଧି ଭ୍ରମ ହୋଇଯାଏ; ଭ୍ରମରୁ ମୋହ ଓ ଅହଂକାର ଉତ୍ପତ୍ତି ହୁଏ । ସବୁ ଦ୍ୱାରା କ୍ରୋଧ ଓ ଲୋଭର ପ୍ରାଦୁର୍ଭାବ ହୁଏ । ଏସବୁର ଆଧିକ୍ୟ ହେତୁ ତପସ୍ୟା ନଷ୍ଟ ହୋଇଯାଏ । ତପସ୍ୟା କ୍ଷୟ ହୋଇଗଲେ ଚିତ୍ତକୁ ମୋହରେ ପକାଉଥିବା ମଳିନତା ସୃଷ୍ଟି ହୁଏ । ସେହି ମଳିନତାରୂପୀ ଶିକୁଳୀରେ ବାନ୍ଧି ହେବା ଦ୍ୱାରା ମନୁଷ୍ୟ ଆଉ ଉପରକୁ ଉଠିପାରେ ନାହିଁ ।''

ଏପରି ବିଗ୍ୱର କରି ସେହି ଶୂଦ୍ର ସେହି ଫଳଟି ସେଠାରେ ଛାଡ଼ିଦେଇ ଘରକୁ ଗ୍ୱଲିଗଲେ । ତାହା ଦେଖି ସ୍ୱର୍ଗର ଦେବତାମାନେ ପ୍ରସନ୍ନତାର ସହିତ 'ସାଧୁ ସାଧୁ' କହି ତାର ପ୍ରଶଂସା କରିବାକୁ ଲାଗିଲେ । ସେତେବେଳେ ମୁଁ ଜଣେ ସର୍ବଜାଗ୍ରତ ରୂପ ଧରି ତାଙ୍କ ଘର ପାଖକୁ ଗଲି ଓ ଲୋକମାନଙ୍କୁ ସେମାନଙ୍କର ଭାଗ୍ୟ କହିବାକୁ ଲାଗିଲି । ମୁଁ ବିଶେଷତଃ ଅତୀତକାଳର କଥା କହୁଥିଲି; ପୁଣି ଲୋକମାନଙ୍କ ବାରମ୍ବାର ଯିବା-ଆସିବା ଦ୍ୱାରା ଏହି ସମାଗ୍ୱର ଗ୍ୱରିଆଡ଼େ ବ୍ୟାପିଗଲା । ଏହା ଶୁଣି ସେହି ଶୂଦ୍ରଙ୍କ ସ୍ତ୍ରୀ ମଧ୍ୟ ମୋ ପାଖକୁ ଆସିଲେ ଓ ନିଜ ଦୁର୍ଭାଗ୍ୟର କାରଣ ପଗ୍ୱରିବାକୁ ଲାଗିଲେ । ମୁଁ ତୁରନ୍ତ ତାଙ୍କ ମନର କଥା ଜାଣି ତାଙ୍କୁ ଏକାନ୍ତରେ କହିଲି, 'ହେ ମହାଭାଗେ ! ବିଧାତା ଆଜି ତୁମ ପାଇଁ ବହୁତ ଧନ ଦେଇଥିଲା; କିନ୍ତୁ ତୁମ ସ୍ୱାମୀ ମୂର୍ଖ ପରି ତାହା ପରିତ୍ୟାଗ କରିଦେଲେ । ତୁମ ଘରେ ଧନର ଘୋର ଅଭାବ । ଏଣୁ ଯେ ପର୍ଯ୍ୟନ୍ତ ତୁମ ସ୍ୱାମୀ ବଞ୍ଚି ରହିବେ, ସେ ପର୍ଯ୍ୟନ୍ତ ତାଙ୍କୁ ଦାରିଦ୍ର୍ୟ ହିଁ ଭୋଗ କରିବାକୁ ପଡ଼ିବ; ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ହେ ମାତଃ ! ତୁମେ ଶୀଘ୍ର ନିଜ ଘରକୁ ଯାଇ ସ୍ୱାମୀଙ୍କୁ ସେହି ଧନ ବିଷୟରେ ପଗ୍ୱର ।' ମୋ କଥା ଶୁଣି ସେ ନିଜ ସ୍ୱାମୀଙ୍କ

ପାଖକୁ ଗଲେ ଏବଂ ସେହି ବୃତ୍ତାନ୍ତ ବିଷୟରେ ଚର୍ଚ୍ଚା କରିବାକୁ ଲାଗିଲେ । ତାଙ୍କର କଥା ଶୁଣି ଶୂଦ୍ରଙ୍କୁ ବଡ଼ ବିସ୍ମୟ ଲାଗିଲା । ସେ କିଛି ଭାବି ପତ୍ନୀକୁ ସାଙ୍ଗରେ ନେଇ ମୋ ପାଖକୁ ଆସିଲେ ଏବଂ ଏକାନ୍ତରେ ମୋତେ କହିଲେ–'ହେ ସର୍ବଜାଣ ! ତୁମେ କ'ଣ କହୁଥିଲ ?'

**(ମୁଁ) ସର୍ବଜାଣ କହିଲେ,** "ହେ ବାପା ! ତୁମକୁ ପ୍ରତ୍ୟକ୍ଷ ଧନ ପ୍ରାପ୍ତ ହୋଇଥିଲା ; ତଥାପି ତୁମେ ଅବଜ୍ଞାପୂର୍ବକ ତାହା ତୃଣ ପରି ତ୍ୟାଗ କରିଦେଲ । ଏପରି କାହିଁକି କଲ ? ଜଣାଯାଉଛି, ତୁମ ଭାଗ୍ୟରେ ଭୋଗ ଲେଖା ନାହିଁ । ଧନ ଅଭାବ ମଧ୍ୟରେ ତୁମକୁ ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ନିଜର ଓ ବନ୍ଧୁବାନ୍ଧବଙ୍କର ଦୁଃଖ ଦେଖିବାକୁ ପଡ଼ିବ ; ପ୍ରତିଦିନ ମୃତ ପରି ଅବସ୍ଥା ଭୋଗିବାକୁ ପଡ଼ିବ ।"

**ଶୂଦ୍ର କହିଲେ,** "ହେ ସର୍ବଜାଣ ! ମୁଁ ଧନ ଇଚ୍ଛା କରେ ନାହିଁ । ଧନ ହେଉଛି ସଂସାରବନ୍ଧନରେ ବାନ୍ଧୁଥିବା ଏକ ଜାଲ । ସେଥିରେ ପଡ଼ିଥିବା ମନୁଷ୍ୟ ଆଉ ଉଦ୍ଧାର ପାଏ ନାହିଁ । ଇହଲୋକ ଓ ପରଲୋକରେ ଧନର ଯେଉଁ ଦୋଷ ଅଛି, ତାହା ଶୁଣ । ଧନ ରହିଲେ ଚୋର, ବନ୍ଧୁବାନ୍ଧବ ତଥା ରାଜାଙ୍କ ଠାରୁ ଭୟ ପ୍ରାପ୍ତ ହୋଇଥାଏ । ଲୋକେ (ସେହି ଧନକୁ ହସ୍ତଗତ କରିବା ପାଇଁ) ଧନୀଲୋକକୁ ମାରିଦେବାକୁ ଚାହାନ୍ତି । ତେଣୁ ଧନ କିପରି ସୁଖଦାୟକ ହୋଇପାରେ ! ଧନ ହେଉଛି ପ୍ରାଣଘାତକ ଏବଂ ପାପସାଧକ । ଅତଏବ ଧନ ହେଉଛି ଦୁର୍ଗତିର ପ୍ରଧାନ କାରଣ ।"

**ସର୍ବଜାଣ କହିଲେ,** "ଯାହା ପାଖରେ ଧନ ଥାଏ, ତାକୁ ମିତ୍ର ମିଳନ୍ତି । ଯାହାର ଧନ ଅଛି, ତାର ସମସ୍ତେ ଭାଇ-ବନ୍ଧୁ । କୁଳ, ଶୀଳ, ପାଣ୍ଡିତ୍ୟ, ରୂପ, ଭୋଗ-ଯଶ ଓ ସୁଖ – ଏସବୁ ଧନବାନକୁ ହିଁ ମିଳେ । ଧନହୀନ ମନୁଷ୍ୟକୁ ତା ସ୍ତ୍ରୀ-ପୁତ୍ର ମଧ୍ୟ ତ୍ୟାଗ କରିଦିଅନ୍ତି; ତାକୁ ମିତ୍ର ମିଳିବେ କିପରି ? ଯେଉଁମାନେ ଜନ୍ମରୁ ଦରିଦ୍ର, ସେମାନେ ଧର୍ମାନୁଷ୍ଠାନ କିପରି କରିପାରିବେ ? ଯେଉଁ ସାତ୍ତ୍ୱିକ ଯଜ୍ଞକାର୍ଯ୍ୟ ତଥା ପୁଷ୍କରିଣୀ ଖୋଳିବା ଆଦି କାର୍ଯ୍ୟ କଲେ ସ୍ୱର୍ଗପ୍ରାପ୍ତି ହୁଏ, ତାହା ମଧ୍ୟ ଧନ ଅଭାବରୁ ହୋଇପାରିବ ନାହିଁ । ଦାନ ହେଉଛି ସଂସାର ପାଇଁ ସ୍ୱର୍ଗକୁ ନିଶୁଣୀ; କିନ୍ତୁ ନିର୍ଦ୍ଧନ ପକ୍ଷରେ ତାହା କରିବା ମଧ୍ୟ ଅସମ୍ଭବ । ବ୍ରତ ଆଦି ପାଳନ, ଧର୍ମୋପଦେଶ ଆଦି

ଶ୍ରବଣ, ପିତୃ-ଯଜ୍ଞ ଆଦି ଅନୁଷ୍ଠାନ ତଥା ତୀର୍ଥସେବନ—ଏସବୁ ଶୁଭକର୍ମ ଧନହୀନ ମନୁଷ୍ୟ କରିପାରିବ ନାହିଁ । ରୋଗ ନିବାରଣ, ପଥ୍ୟ ସେବନ, ଔଷଧ ସଂଗ୍ରହ, ନିଜ ଶରୀରର ରକ୍ଷା ତଥା ଶତ୍ରୁମାନଙ୍କ ଉପରେ ବିଜୟ ଆଦି କାର୍ଯ୍ୟ ମଧ୍ୟ ଧନଦ୍ୱାରା ସିଦ୍ଧ ହୋଇଥାଏ । ଏଣୁ ଯାହା ପାଖରେ ବହୁତ ଧନ ଅଛି, ତାକୁ ତାହାର ଇଚ୍ଛାନୁସାରେ ଭୋଗ ମିଳିପାରିବ । ଧନ ଥିଲେ ତୁମେ ଦାନ କରି ହିଁ ଶୀଘ୍ର ସ୍ୱର୍ଗପ୍ରାପ୍ତି କରିପାରିବ ।''

**ଶୂଦ୍ର କହିଲେ,** ''କାମନା ତ୍ୟାଗ କରିଦେଲେ ହିଁ ସମସ୍ତ ବ୍ରତ ପାଳନ ହୋଇଯାଏ । କ୍ରୋଧ ଛାଡ଼ିଦେଲେ ତୀର୍ଥସେବନ ହୋଇଯାଏ । ଦୟା ହିଁ ଜପ ସମାନ । ସନ୍ତୋଷ ହିଁ ଶୁଦ୍ଧ ଧନ; ଅହିଂସା ହିଁ ସବୁଠାରୁ ବଡ଼ ସିଦ୍ଧି । ଶିଳବୃତ୍ତି ହିଁ ଉତ୍ତମ ଜୀବିକା । ଶାଗ-ଭାତ ହିଁ ଅମୃତ ସମାନ । ଉପବାସ ହିଁ ଉତ୍ତମ ତପସ୍ୟା । ସନ୍ତୋଷ ହିଁ ମୋ ପକ୍ଷରେ ବିରାଟ ଭୋଗ । ମୋ ପରି ବ୍ୟକ୍ତି ପାଇଁ କଉଡ଼ିମାତ୍ର ଦାନ ମହାଦାନ । ପରସ୍ତ୍ରୀ ମାତା ଓ ପରଧନ ମାଟିର ଢେ଼ଲା ସମାନ । ପରସ୍ତ୍ରୀ ସର୍ପ ପରି ଭୟଙ୍କର । ଏହି ନିଷ୍ଠା ହେଉଛି ମୋର ଯଜ୍ଞ । ହେ ଗୁଣନିଧି ! ସତ କହୁଛି, ଏହି କାରଣରୁ ମୁଁ ସେହି ଧନ ଆଣିଲି ନାହିଁ । କାଦୁଅରେ ପଶି ଧୋଇ ହେବା ଅପେକ୍ଷା କାଦୁଅକୁ ନ ଯିବା ହିଁ ଭଲ ।''

**ଶ୍ରୀଭଗବାନ୍ କହିଲେ,** ''ହେ ନରଶ୍ରେଷ୍ଠ ! ସେହି ଶୂଦ୍ର ଏତିକି କହିବାମାତ୍ରେ ସମସ୍ତ ଦେବତା ତାଙ୍କ ଶରୀର ଓ ମସ୍ତକ ଉପରେ ପୁଷ୍ପ ବୃଷ୍ଟି କରିବାକୁ ଲାଗିଲେ । ତୁରନ୍ତ ଆକାଶରୁ ବିମାନ ଓ୍ୱାଲିଆସିଲା । ଦେବତାମାନେ କହିଲେ, ''ହେ ଧର୍ମାତ୍ମନ୍ ! ଏହି ବିମାନରେ ବସ ଓ ସତ୍ୟଲୋକକୁ ଯାଇ ଦିବ୍ୟସୁଖ ଉପଭୋଗ କର । ତୁମ ଉପଭୋଗ ସମୟର କୌଣସି ସୀମା ନାହିଁ— ଅନନ୍ତକାଳ ପର୍ଯ୍ୟନ୍ତ ତୁମକୁ ପୁଣ୍ୟଫଳ ଭୋଗ କରିବାକୁ ମିଳିବ ।'' ଦେବଗଣ ଏପରି କହିବାରୁ **ଶୂଦ୍ର କହିଲେ,** ''ଏହି ସର୍ବଜାଣଙ୍କୁ ଏପରି ଜ୍ଞାନ, ଏପରି ଚେଷ୍ଟା ଓ ଏହିପରି ଭାଷଣର ଶକ୍ତି କିପରି ମିଳିଲା ? ଏ ଭଗବାନ୍ ବିଷ୍ଣୁ, ଶିବ, ବ୍ରହ୍ମା, ଶୁକ୍ର ଅଥବା ବୃହସ୍ପତି— ଏମାନଙ୍କ ମଧ୍ୟରୁ କେହି ନୁହନ୍ତି ତ ? ମୋତେ ପରୀକ୍ଷା କରିବାକୁ ସାକ୍ଷାତ୍ ଧର୍ମଦେବ ହିଁ ଏଠାକୁ ଆସି ନାହାନ୍ତି ତ ?'' ଶୂଦ୍ରଙ୍କର ଏପରି କଥା ଶୁଣି ସର୍ବଜାଣ

ରୂପରେ ଉପସ୍ଥିତ ଥିବା ମୁଁ ହସି ହସି କହିଲି, "ହେ ମହାମୁନେ! ମୁଁ ସାକ୍ଷାତ୍ ବିଷ୍ଣୁ; ତୁମ ଧର୍ମ ଜାଣିବା ପାଇଁ ମୁଁ ଏଠାକୁ ଆସିଥିଲି; ଏଥର ତୁମେ ସପରିବାର ସ୍ୱର୍ଗକୁ ଯାଅ ।"

ତା'ପରେ ସେହି ଶୂଦ୍ର ଦିବ୍ୟ ଆଭୂଷଣ ଓ ଦିବ୍ୟ ବସ୍ତ୍ରମାନଙ୍କରେ ସୁଶୋଭିତ ହୋଇ ସହସା ପରିବାର ସହିତ ସ୍ୱର୍ଗକୁ ଚାଲିଗଲେ । ସେହି ଶୂଦ୍ର-ପରିବାରର ଲୋକେ ଲୋଭ ତ୍ୟାଗ କରିଥିବାରୁ ସ୍ୱର୍ଗକୁ ଗଲେ । ବୁଦ୍ଧିମାନ୍ ତୁଳାଧାର ହେଉଛନ୍ତି ଧର୍ମାତ୍ମା; ସେ ସତ୍ୟଧର୍ମରେ ପ୍ରତିଷ୍ଠିତ । ତେଣୁ ଅନ୍ୟ ସ୍ଥାନରେ ହେଉଥିବା ଘଟଣା ମଧ୍ୟ ସେ ଜାଣିପାରନ୍ତି । ତୁଳାଧାରଙ୍କ ସମାନ ପ୍ରତିଷ୍ଠିତ ବ୍ୟକ୍ତି ଦେବଲୋକରେ ମଧ୍ୟ ନାହାନ୍ତି । ଯେଉଁ ମନୁଷ୍ୟ ଧର୍ମରେ ପ୍ରତିଷ୍ଠିତ ହୋଇ ଏହି ପବିତ୍ର ଉପାଖ୍ୟାନ ଶ୍ରବଣ କରେ, ତାହାର ଜନ୍ମ ଜନ୍ମର ପାପ ସଙ୍ଗେ ସଙ୍ଗେ ନଷ୍ଟ ହୋଇଯାଏ । ଏହା ଥରେମାତ୍ର ପଠନ କଲେ ସମସ୍ତ ଯଜ୍ଞମାନଙ୍କର ଫଳ ମିଳିଯାଏ । ସେହି ପାଠକ ସଂସାରରେ ଶ୍ରେଷ୍ଠ ଓ ଦେବତାମାନଙ୍କର ମଧ୍ୟ ପୂଜ୍ୟ ହୁଅନ୍ତି ।"

**ବ୍ୟାସଦେବ କହିଚାଲିଲେ,** "ତା'ପରେ, ମୂକ ଚାଣ୍ଡାଳ ଆଦି ସବୁ ଧର୍ମାତ୍ମା ପରମଧାମକୁ ଯିବା ଇଚ୍ଛାରେ ଭଗବାନଙ୍କ ପାଖକୁ ଆସିଲେ । ସେମାନଙ୍କ ସହିତ ସେମାନଙ୍କର ସ୍ତ୍ରୀମାନେ ଓ ପରିଜନମାନେ ମଧ୍ୟ ଥିଲେ । ସେମାନଙ୍କ ଘର ଆଖ-ପାଖରେ ଯେଉଁ ଝିଟିପିଟି ତଥା ନାନାପ୍ରକାରର କୀଟପତଙ୍ଗ ଥିଲେ, ସେମାନେ ମଧ୍ୟ ଦେବସ୍ୱରୂପ ହୋଇ ସେମାନଙ୍କ ପଛେ ପଛେ ଯିବାକୁ ଉପସ୍ଥିତ ହେଲେ । ଦେବତା, ସିଦ୍ଧ ଓ ମହର୍ଷିଗଣ 'ଧନ୍ୟ-ଧନ୍ୟ' କହି ପୁଷ୍ପବୃଷ୍ଟି କରିବାକୁ ଲାଗିଲେ । ବିମାନ ଓ ସ୍ୱର୍ଗରେ ଦୁନ୍ଦୁଭି ବାଜିବାକୁ ଲାଗିଲା । ସବୁ ମହାତ୍ମା ନିଜ ନିଜ ବିମାନରେ ଆରୋହଣ କରି ବିଷ୍ଣୁଧାମକୁ ଚାଲିଲେ । ବ୍ରାହ୍ମଣ ନରୋତ୍ତମ ଏହି ଅଦ୍ଭୁତ ଦୃଶ୍ୟ ଦେଖି ଶ୍ରୀ ଜନାର୍ଦ୍ଦନଙ୍କୁ କହିଲେ, 'ହେ ଦେବେଶ ! ହେ ମଧୁସୂଦନ !! ମୋତେ କୌଣସି ଉପଦେଶ ଦିଅନ୍ତୁ ।"

**ଶ୍ରୀଭଗବାନ୍ କହିଲେ,** "ହେ ତାତ ! ତୁମ ମାତା-ପିତାଙ୍କ ହୃଦୟ ଶୋକରେ ବ୍ୟାକୁଳ ହେଉଛି; ସେମାନଙ୍କ ପାଖକୁ ଯାଅ । ସେମାନଙ୍କୁ ଯତ୍ନପୂର୍ବକ ଆରାଧନା କଲେ ତୁମେ ଶୀଘ୍ର ମୋ ଧାମକୁ ଚାଲିଯିବ । ମାତା-

ପିତାଙ୍କ ସମାନ ଦେବତା ଦେବଲୋକରେ ମଧ୍ୟ ନାହାନ୍ତି । ସେମାନେ ଶୈଶବ କାଳରେ ତୁମକୁ ଲାଳନପାଳନ କରିଛନ୍ତି । ତୁମକୁ ଖୋଇପେଇ ବଢ଼ାଇଛନ୍ତି । ତୁମେ ଅଜ୍ଞାନ ଥିଲ ; ମାତା-ପିତା ତୁମକୁ ସଜ୍ଞାନ କରିଛନ୍ତି । ଚରାଚର ପ୍ରାଣୀମାନଙ୍କ ସହିତ ତ୍ରିଲୋକରେ ମଧ୍ୟ ସେମାନଙ୍କ ପରି ପୂଜ୍ୟ କେହି ନାହାନ୍ତି ।''

**ବ୍ୟାସଦେବ କହିଚାଲିଲେ,** ''ତା'ପରେ ଦେବଗଣ ମୂକ ଚଣ୍ଡାଳ, ପତିବ୍ରତା ଶୁଭା, ତୁଳାଧାର ବୈଶ୍ୟ, ସଜ୍ଜନାଦ୍ରୋହକ ଓ ବୈଷ୍ଣବ ସନ୍ଥ – ଏହି ପାଞ୍ଚ ମହାତ୍ମାଙ୍କୁ ସଙ୍ଗରେ ନେଇ, ପ୍ରସନ୍ନତାପୂର୍ବକ ଭଗବାନଙ୍କୁ ସ୍ତୁତି କରି ବୈକୁଣ୍ଠଧାମକୁ ଚାଲିଲେ । ସେମାନେ ସମସ୍ତେ ଅଚ୍ୟୁତରୂପ ହୋଇ ସାରା ସଂସାରର ଊର୍ଦ୍ଧ୍ୱରେ ରହିଲେ । ନରୋତ୍ତମ ବ୍ରାହ୍ମଣ ମଧ୍ୟ ଯତ୍ନପୂର୍ବକ ମାତା-ପିତାଙ୍କୁ ଆରାଧନା କରି କିଛି କାଳ ମଧ୍ୟରେ ସକୁଟୁମ୍ବ ଭଗବଦ୍ଧାମ ପ୍ରାପ୍ତ କଲେ । ହେ ଶିଷ୍ୟଗଣ ! ଏହି ପାଞ୍ଚ ମହାତ୍ମାଙ୍କ ପବିତ୍ର ଉପାଖ୍ୟାନ ମୁଁ ତୁମକୁ ଶୁଣାଇଲି । ଯେ ଏହା ପଠନ ଓ ଶ୍ରବଣ କରିବ, ତାହାର କେବେ ଦୁର୍ଗତି ହେବ ନାହିଁ । ସେ ବ୍ରହ୍ମହତ୍ୟା ଆଦି ପାପରେ କେବେ ଲିପ୍ତ ହୋଇପାରିବ ନାହିଁ । ମନୁଷ୍ୟ କୋଟି-କୋଟି ଗୋଦାନ କରି ଯେଉଁ ଫଳ ପାଏ, ପୁଷ୍କର ତୀର୍ଥ ଓ ଗଙ୍ଗା ନଦୀରେ ସ୍ନାନ କରି ତାକୁ ଯେଉଁ ଫଳ ମିଳେ, ଥରେ ମାତ୍ର ଏହି ଉପାଖ୍ୟାନ ଶ୍ରବଣ କରିବାମାତ୍ରେ ସେହି ଫଳ ମିଳିଯାଏ ।''



ଗୀତା ଗଙ୍ଗାଠାରୁ ମଧ୍ୟ ଶ୍ରେଷ୍ଠତର । ଶାସ୍ତ୍ରମାନଙ୍କରେ ଗଙ୍ଗାସ୍ନାନର ଫଳ ମୁକ୍ତି ବୋଲି କୁହାଯାଇଛି । କିନ୍ତୁ ଗଙ୍ଗାସ୍ନାନ କରୁଥିବା ଲୋକ ନିଜେ ସିନା ମୁକ୍ତ ହୋଇପାରନ୍ତି, ହେଲେ ସେ ଅନ୍ୟମାନଙ୍କୁ ମୁକ୍ତ କରିବାର ସାମର୍ଥ୍ୟ ରଖନ୍ତି ନାହିଁ । କିନ୍ତୁ ଗୀତାରୂପୀ ଗଙ୍ଗାରେ ବୁଡ଼ ପକାଉଥିବା ଲୋକ ସ୍ୱୟଂ ତ ମୁକ୍ତ ହୁଏ, ତା ସହିତ ଅନ୍ୟକୁ ମୁକ୍ତ କରିବାକୁ ମଧ୍ୟ ସମର୍ଥ ହୋଇଯାଏ । ଗଙ୍ଗା ତ ଭଗବାନଙ୍କ ମୁଖାରବିନ୍ଦରୁ ଉତ୍ପନ୍ନ ହୋଇଛନ୍ତି । ପୁଣି ଯେଉଁମାନେ ଗଙ୍ଗାରେ ସ୍ନାନ କରନ୍ତି, ଗଙ୍ଗା କେବଳ ସେହିମାନଙ୍କୁ ମୁକ୍ତ କରିଦିଅନ୍ତି ; କିନ୍ତୁ ଗୀତା ତ ଘରେ ଘରେ ଯାଇ ସମସ୍ତଙ୍କୁ ମୁକ୍ତିର ମାର୍ଗ ଦେଖାଇଦିଅନ୍ତି । ଏହିସବୁ କାରଣରୁ ଗୀତା ଗଙ୍ଗାଠାରୁ ଶ୍ରେଷ୍ଠତର ବୋଲି କୁହାଯାଇଛି ।

ଗୀତା ଗାୟତ୍ରୀଠାରୁ ମଧ୍ୟ ଶ୍ରେଷ୍ଠତର । ଗାୟତ୍ରୀ-ଜପଦ୍ୱାରା ଯେ ମନୁଷ୍ୟର ମୁକ୍ତି ହୁଏ, ତାହା ଠିକ୍ ; କିନ୍ତୁ ଗାୟତ୍ରୀ-ଜପ କରୁଥିବା ଲୋକ କେବଳ ସ୍ୱୟଂ ମୁକ୍ତ ହୁଅନ୍ତି; କିନ୍ତୁ ଗୀତା ଅଭ୍ୟାସ କରୁଥିବା ଲୋକ ସ୍ୱୟଂ ତ୍ରାଣକର୍ତ୍ତା ହୋଇଯାଆନ୍ତି ; ସେଠାରେ ମୁକ୍ତି କଥା ଆଉ କ'ଣ କହିବା । ମୁକ୍ତି ତାଙ୍କ ଚରଣଧୂଳିରେ ନିବାସ କରେ । ସେ ମୁକ୍ତିର ଛତ୍ର ଖୋଲିଦିଅନ୍ତି । ଗୀତାକୁ ଆମେ ସ୍ୱୟଂ ଭଗବାନଙ୍କ ଠାରୁ ଶ୍ରେଷ୍ଠ ବୋଲି କହିଲେ ମଧ୍ୟ ଅତ୍ୟୁକ୍ତି ହେବ ନାହିଁ । ସ୍ୱୟଂ ଭଗବାନ୍ କହିଛନ୍ତି–

**ଗୀତାଶ୍ରୟେଽହଂ ତିଷ୍ଠାମି ଗୀତା ମେ ଚୋତ୍ତମଂ ଗୃହମ୍ ।**
**ଗୀତାଜ୍ଞାନମୁପାଶ୍ରିତ୍ୟ ତ୍ରୀଁଲ୍ଲୋକାନ୍ ପାଳୟାମ୍ୟହମ୍ ॥**

(ବରାହ ପୁରାଣ)

'ମୁଁ ଗୀତାର ଆଶ୍ରୟରେ ରହିଛି; ଗୀତା ମୋର ଶ୍ରେଷ୍ଠ ଗୃହ । ଗୀତାଜ୍ଞାନର ଆଶ୍ରୟ ନେଇ ମୁଁ ତିନିଲୋକକୁ ପାଳନ କରୁଛି ।'

–*ଗୀତା ତତ୍ତ୍ୱବିବେଚନୀ ନାମକ ପୁସ୍ତକରୁ*

